# କଥା ସାଗର

ସଂଗ୍ରାହକ

ପ୍ରାଧ୍ୟାପକ ଡକ୍ଟର କୃଷ୍ଣପ୍ରସାଦ ମିଶ୍ର

ପ୍ରକାଶକ :

ଶ୍ରୀ ଅନନ୍ତ ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର : କଟକ-୨

ନୂତନ ପ୍ରକାଶ

୧୯୭୨

ମୁଦ୍ରାକର
ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର
ପ୍ରସାଦ ପ୍ରେସ, କଟକ-୨

ମୂଲ୍ୟ—ତିନିଟଙ୍କା

# ସୂଚୀ

---

# ଧୂଳିଆ ବାବା

## ସ୍ୱର୍ଗତ ବ୍ୟାସକବି ଫକୀରମୋହନ ସେନାପତି

ଦେଗାଁର ହନୁମାନଜୀ ପ୍ରତ୍ୟକ୍ଷ ଦେବତା । ସେ ତ କିଛି ଆଜକାଲିକା କଳିଯୁଗର ଦେବତା ନୁହନ୍ତି; ସତ୍ୟଯୁଗରୁ ବିରାଜୁଛନ୍ତି । ମହନ୍ତ ମହାରାଜାଙ୍କ ନାମ ହନୁମାନ୍ ଦାସ । ତାଙ୍କର ବି ସେହିପରି ମହିମା । ବଡ ବଚନସିଦ୍ଧ ପୁରୁଷ ଥିଲେ । ଯାହାକୁ ଯାହା ଆଜ୍ଞା କରୁଥିଲେ, ତୁରନ୍ତ ଫଳ ଯାଉଥିଲି । ତାଙ୍କ ମହିମା କଥା ପୃଥିବୀଯାକ ଜାଣି । ନାଗପୁର ମରହଟ୍ଟା ଫୌଜଦାର ସବୁ କଥା ଶୁଣିପାରି ତାଙ୍କୁ ଦର୍ଶନ କରିବାକୁ ଅଇଲି । ସକାଳଓଳିଆ ମହନ୍ତ ମହାରାଜ ଗୋଟାଏ କାନ୍ଥଡ଼ା ଉପରେ ବସି ଗଞ୍ଜେଇ ଟିପୁଥିଲେ । ଦୂରକୁ ଅନାଇ ଦେଖିଲେ ଯେ, ଗୋଟାଏ ଖୁବ୍ ବଡ଼ ଦନ୍ତାହାତି ଉପରେ ଅମାରିକସା, ତା' ଉପରେ ପାଟଛତା ଉଡ଼ୁଛି, ଫୌଜଦାର ତା' ଉପରେ ବସି ଆସୁଛି । ମହନ୍ତ ମହାରାଜ ଖାଲି ଏତିକି କହିଲେ, "ହୁଁ—ଚେଲ୍ ବାବା କାନ୍ଥଡ଼ା ଚେଲ୍ ।" ଆଉ କଣ କାନ୍ଥଡା ରହିପାରେ, ଚାଲିଲା; ତେଣୁ ଆସୁଛି ହାତୀ, ଏଣୁ ଯାଉଛି କାନ୍ଥଡ଼ା, ଅଧବାଟରେ ଭେଟାଭେଟି । ଫୌଜଦାର ଯେମିତି ଅନାଇ ଦେଇଛି; ଆଉ କଣ ହାତୀରେ ବସିପାରେ । ଖଫ୍‌କରି ହାତୀରୁ ଡେଇଁପଡ଼ି ଲମ୍‌ତମ୍ ଗୋଡ଼ତଳେ ପଡ଼ିଗଲି ।

ମହନ୍ତ ମହାରାଜା କଲ୍ୟାଣ କଲେ, "ଖାଡେ ରହୋ--ଖାଡେ ରହୋ ! ବଚ୍ଚା, ଉଠ୍--ଉଠ !" ଫୌଜଦାର ଯେମିତି ଉଠିଛି, ସାଙ୍ଗେ ସାଙ୍ଗେ ତମ୍ବାପାଟିଆରେ ବାରବାଟି ଜମି ଅକର ସନନ୍ଦ କରିଦେଲା । ଏହି ମହନ୍ତ ଗାଦିରେ ବସିଥିଲେ--ବାରଶ ବାରମାସ ବାର ଦିନ । ସେ ତ ଥିଲେ ଇଚ୍ଛାମୟ ପୁରୁଷ, ଆଉ ପୃଥିବୀରେ ରହିବାକୁ ମନ ବଳିଲା ନାହିଁ । ଅଯୋଧ୍ୟାକୁ ଖବର ଗଲା । ହନୁମାନ ଗାଦିରୁ ଜଣେ ଚେଲା ଆସିଲେ । ଏହାଙ୍କ ହାତରେ ଗାଦି ଦେଇ ସ୍ୱର୍ଗକୁ ଚାଲିଗଲେ । ଏ ଚେଲାଙ୍କ ନାମ ମର୍କଣ୍ଠ ଦାସ ମହନ୍ତ ମହାରାଜ । ଗାଦିର ମହିମା-- ଏ ମହନ୍ତ ବି ସେହିପରି । ଏହାଙ୍କ ସମୟରେ ପଡ଼ିଲା ଫିରିଙ୍ଗୀ ଅମଳ ଜାରି । କଟକ ସାହେବ କହିଲା, "କ୍ୟା ହିଣ୍ଡୁ ଫକୀରଠୋ ଖଜଣା ନଦେଇ କେଓଁ ଏତେଗୁଡ଼ାଏ ଜମି ମାହାଲିଆ ଖାଏଗା ? ବୋଲାଓ ଉସ୍କୁ ହାମ୍ ଦେଖେଗା !" ପରୁଆନା ପାଇ ମହନ୍ତ ଘୋଡ଼ାରେ ଚଢ଼ି ବାହାରିଲେ । ଆଗରେ ବାନା ବୈରଖ ଉଡ଼ୁଛି, ହରିବୋଲ ପଡ଼ୁଛି, କୀର୍ତ୍ତନ ଲାଗିଛି, ଯାଇ ହଜେ ହୋଇଗଲେ ମହାନଦୀ କୂଳରେ । ଭାଦୁଅ ମାସିଆ ଦିନ, ମହାନଦୀ ଏ କୂଳ ସେ କୂଳ ଖାଉଛି, ବର୍ଷାତୋଫାନ ବୋଲେ ମୁହିଁ—ନାଉରୀ କହିଲା, ନାଆ ଫିଟାଇବ ନାହିଁ । ପାରି ହେଉଛନ୍ତି କିମିତି ? ମହନ୍ତ ମହାରାଜ ଆଜ୍ଞା କଲେ, "ପରବା ନାହିଁ !" କାଖରେ ଯେ ବାଘଛାଲ ଥିଲା, ପାଣିରେ ପାରିଦେଲେ—ଆପେ ହଜେ ହୋଇଗଲେ, ଅଧିକାରୀ ଠେହଳିଆ, ସୁଆର, ଚଳବାଉଳ ଲୋକଙ୍କୁ ପାଖରେ ବସାଇନେଲେ । ଜଣେ ଛତିଆ ମହନ୍ତଙ୍କ ମୁଣ୍ଡଉପରେ ପାଟଛତା ଟେକିଥାଏ । ଦୁଇ ଜଣ ବାହୁଆ ଛାଲ ବାହି ଯାଉଥାନ୍ତି । ଏଣେ ମହାନଦୀ ଆର କୂଳରେ ସାହେବ ରାଉଟି ପକାଇ ବସିଥିଲା । ଦୂରବୀନ୍‌ରେ ଚାହିଁ-ଦେଲା; ପାଖଲୋକଙ୍କୁ ପଚାରିଲା; "ଏ କ୍ୟା ?" ଲୋକେ କହିଲେ,

"ହିନ୍ଦୁ ଫକୀର ବଜେ ହୋଇ ଆସୁଛନ୍ତି ।" ସାହେବ ଆଉ କଣ ଚୌକିରେ ବସିବ, ନଈକୂଳକୁ ଧାଇଁ ଅଇଲା, ମୁଣ୍ଡରୁ ଟୋପି ତଳେ ରଖି ତିନି ସଲାମ୍ କଲା । କହିଲା, "ହାଲେ ଫକୀର, ତୁମାରି ଜମିନ୍‌ବାହାଲ ।" ଏ ମହନ୍ତଦେଉ ହଜାର ବର୍ଷ ଗାଦିରେ ବସିଥିଲେ । ତାଙ୍କ ଉତ୍ତାରେ ଗାଦିରେ ବସିଲେ ଜମ୍ବୁବାନ ମହନ୍ତମହାରାଜ । ମଠର ପଛପଟରେ ଯେଉଁ ହ'ଫାଙ୍କୁଡ଼ିଆ ବୁଢ଼ା ସାହାଡ଼ାଗଛ ଦେଖୁଛ, ଏଇଟା କ'ଣ ଜାଣ ? ମହନ୍ତ ଦିନେ ସାହାଡ଼ା ଦାନ୍ତକାଠିରେ ଦାନ୍ତ ଘଷୁଥିଲେ । କାଠିଖଣ୍ଡ ଦାନ୍ତରେ ଚିରି ଜିଭ ଛେଲି ପକାଇ ଦୁଇଖଣ୍ଡ କାଠି ଯୋଡ଼ି ମାଟିରେ ପୋତିଦେଲେ । ତା'ଉପରେ ଯେମିତି ଟୋପାଏ ପାଣି ପକାଇଛନ୍ତି, ସେମିତି ଗଜେଇଗଲା । ଏଇଟା ସେଇ ଗଛ । ବର୍ତ୍ତମାନ ମହନ୍ତଙ୍କ ନାମ ବାନ୍ଦର ଦାସ ମହନ୍ତ ମହାରାଜ । ଏପରି ପୁରୁଷ କାହିଁ ଦେଖାନାହିଁ; ନ ଥିବ । ପଞ୍ଚହାତା ମର୍ଦ୍ଦ, ଗାଲ ଓଠ ଗୁଡ଼ିରେ ଲାଗିଯାଉଚି, ବେକ ଦିଶେ ନାହିଁ । ବାହୁ ଆଉ ଲୋକଙ୍କ ଜଂଘ ପରି ମୋଟା, ପେଟଟି ଗୋଟିଏ ଦଶ ନଉ-ତିଆ ଘୁମ । ଅଜଣା ଲୋକେ ଦେଖି କହିବେ, ମହନ୍ତ ଲଙ୍ଗଳା । ନାହିଁ, ନାହିଁ, ଗୃହଖଣ୍ଡେ ଚୌଡ଼ା ଦେଢ଼ହାତ ଲମ୍ବ ଖଣ୍ଡେ କନା କୌପୀନ ମାରି ଥାଆନ୍ତି । ଜଂଘକୁ ଜଂଘ ଲାଗିଯାଇଛି । ପେଟଟି ଝୁଲି ପଡ଼ିଛି । କୌପୀନ ଦିଶେ ନାହିଁ । ଏ ମହନ୍ତଙ୍କର ବ ମହିମା ଅପାର । ମନ୍ଦିରରେ ଏତେ ଖଟ ପଲଙ୍କ, କାହିଁରେ ଶୋଇବେ ନାହିଁ । ସବୁବେଳେ ଧୂଳିରେ ଗଡୁଥାନ୍ତି । ଦେହଯାକ ଧୂଳି ଧୂସର । ସ୍ନାନ କେବେ କରନ୍ତି ନାହିଁ, ପାଣି ଛୁଅଁନ୍ତି ନାହିଁ । ଏଥିପାଇଁ ଲୋକ-ମାନେ ମହନ୍ତ ମହାରାଜାଙ୍କୁ ଧୂଳିଆବାବା ବୋଲି ଡାକନ୍ତି । ମନ୍ଦିରରେ ଏତେ ଧନ ଦୌଲତ, ଏତେ ପିଠା, ଖଜା କଟି ଛୁଇଁବେ ନାହିଁ । ଦଶ ସେର କରୁଡା ଦୁଧ ଆଉଟି ଆଉଟି ପାଞ୍ଚ

ସେଇ ରହିବ । ଅଲତା ଫଡ଼ା ପଇ ଉପରେ ସଇ ପଡ଼ିବ । ହିପହର ଧୂପରେ ଠାକୁରଙ୍କ କଣ୍ଠରେ ଧୂପ ଲାଗେ । ମହନ୍ତ ମହାରାଜ ଚେଲାଙ୍କ ସେବା କରନ୍ତି । ଆଉ ତୋଳାଏ ଆପ୍ଟୁ, ପାଏ ଗଞ୍ଜେଇ ଖଞ୍ଜା । ହିନ ରାତି ଗଞ୍ଜେଇ ଚିଲମ ହାତରୁ ଛୁଟେଣି ନ ଥାଏ । ଆଖି ଯୋଡ଼ିକ ସାନ ସାନ ସିନ୍ଦୂରବିନ୍ଦୁ ପରି ଲାଲ । ସବୁବେଳେ ମିଞ୍ଜି ମିଞ୍ଜି କରି ଚାହାନ୍ତି । ତାଙ୍କ ଗଞ୍ଜେଇ ଚିଲମଟା ହାତେ ଲମ୍ବ । ଦଶ ପନ୍ଦର ଜଣ ଭକତ ଚେଲା ସବୁବେଳେ ବେଢ଼ି ବସିଥାଆନ୍ତି । ଗଞ୍ଜେଇ ଟିପା କାମ ପାଞ୍ଚ ଛଅଜଣଙ୍କ ହାତରେ ଲାଗିଥାଏ । ମନ୍ଦିରରୁ ପ୍ରସାଦ ସେବାକରି ସବୁବେଳେ ଏମାନେ ପାଖରେ ହାଜର ।

ଆଗ ଆଗ ମହନ୍ତ ମହାରାଜାଙ୍କ ମହିମା କଥା ଦେଶଲୋକଙ୍କୁ ଜଣା । ପୁଣି ସେ ସବୁ କଥା ଭୂର୍ଜପତ୍ରରେ ଦେବନାଗର ଅକ୍ଷରରେ ରକ୍ତଚନ୍ଦନରେ ଲେଖା ହୋଇ ଦେଉଙ୍କ ସିଂହାସନ ତଳେ ଅଛି । ଏ ଧୂଳିଆବାବା ସେ ସବୁ ପଢ଼ି ଆସି ବିଶ୍ୱାସୀ ଭକ୍ତମାନଙ୍କ ପାଖରେ ଗୋପନରେ କହନ୍ତି । କେହି କେହି ଅବିଶ୍ୱାସୀ ଭକ୍ତ ଲୋକଙ୍କ ପାଖରେ ପ୍ରକାଶ କରିପକାଏ ।

ଧୂଳିଆବାବା ସବୁହିନେ ଚେଲାମାନଙ୍କ ଆଗରେ କହନ୍ତି, "ଏ ପୁରୀରେ ଯେ ଜଗନ୍ନାଥ ଦେଉଳ ଦେଖୁଛ, ତିଆରି ହେଲାବାଦ ପ୍ରତିଷ୍ଠାକୁ ଅଯୋଧ୍ୟାରୁ ହଜାରେ ଆଠ ମୂରତି ସାଧୁମହନ୍ତ ଭୋଜି ଖାଇବାକୁ ଆସିଥିଲେ । ଏ ବି ସେମାନଙ୍କ ମଧ୍ୟରେ ଆସିଥିଲେ । ଚେଲାମାନଙ୍କ ଭକ୍ତି ଏଡ଼ି ନ ପାରି ରହି ଯାଇଛନ୍ତି । * ଆଉ ଏ ମିଛୁଆ ଦେଶଟା ଭଲ ଲାଗୁନାହିଁ, ଅଯୋଧ୍ୟା ହନୁମାନ ଗାଦିକୁ

---

* ଏହିଭଳି ଜଣେ ମହନ୍ତ ଲେଖକଙ୍କର ପ୍ରତିବାସୀ ଥିଲେ । ଲେଖକ ସେ ମହନ୍ତଙ୍କ ଶ୍ରୀମୁଖରୁ ତାହାଙ୍କ ବୟସ ସମ୍ବନ୍ଧରେ ଏଇକଥା ଶୁଣିଛି ।

ଫେରସିବେ ।" ପ୍ରସାଦ ସେବାକାଣ୍ଡ ଚେଲାମାନେ ଗୋଡ଼ତଳେ ପଡ଼ ଗଡ଼ନ୍ତ । ଏମାନଙ୍କ ଉପରେ କୃପା କର ଧୂଳିଆବାବା ରହିଯାଇଛନ୍ତ । ଏପର ଘଟଣା ଶହକୁ ଶହ ଥର ହୋଇଗଲାଣି ।

ମହନ୍ତଙ୍କର ଧନ ଦୌଲତ ଅମାପ । ଗାଈ, ମଇଁଷି ପଲକୁ ପଲ; ଧାନ, ଟଙ୍କାର ସୀମା ନାହିଁ । ଆପ୍ଟ ଢେର । ଆପ୍ଟ ମଧ୍ୟରୁ ଗୋଟିଏ ବିଶେଷ ଆପ୍ଟ ଏହି, ଦେଶ ମଧ୍ୟରେ ମାଲିମକଦ୍ଦମା ଉପସ୍ଥିତ ହେଲେ ମୁଦେଇମୁଦାଲା ଦୁଇପକ୍ଷ ପ୍ରଭୁଙ୍କ ପାଖରେ ମନାସି ଯାନ୍ତ; ମାମଲା ଡିକ୍ରୀ ହେଲେ କିଏ କେତେ ଟଙ୍କା ଦେବେ, ପାଞ୍ଜିଆ ଲେଖି ରଖେ । ଯାହାର ମାମଲା ଡିକ୍ରୀ ହୁଏ, ଜଣେ ସାଧୁଙ୍କୁ ପଠାଇ ତା'ଠାରୁ ଟଙ୍କା ଅସୁଲ କରାଯାଏ ।

ରାମ ସାଉ ଶାମ ସାଉ ଦୁଇଭାଇ । ଦୁଇଭାଇ ବଣ୍ଟୁଆରା ପାଇଁ କଟକ ଅଦାଲତରେ ମକଦ୍ଦମା ଦାଏର ହେଲା । ରାମସାଉ ପ୍ରଭୁଙ୍କ-ଠାରେ ମନାସି ଗଲା, ମାମଲା ଡିକ୍ରୀ ହେଲେ କେତେ ଟଙ୍କା ଦେବ, ପାଞ୍ଜିଆ ପାଖରେ ଲେଖି ଦେଇଗଲା । ଶାମ ସାଉ ଆସେ ନାହିଁ । ବୁଝ ବୁଝ ଶ୍ୟାମ କିଆଁ ଅଇଲା ନାହିଁ ? ଜଣେ ଚେଲା ବୁଝି ଆସି ଜଣାଇଲା, "ପ୍ରଭୁ ! କ'ଣ କହିବି, କହିବାକୁ ଡର ମାଡ଼ୁଛି । ଆଜ୍ଞା, ଶାମାର ଏଡ଼େ ବହପ, ପାଞ୍ଚଜଣଙ୍କ ଆଗରେ ସଫା ଫିଟେଇ କହିଲା, 'କଳିକାଳରେ ମହନ୍ତଙ୍କ କରାମତି କାହିଁ ଯେ, ମୁଁ ମନାସି-ବାକୁ ଯିବି ।' ମହନ୍ତ ତେତେବେଳେ ଗଞ୍ଜେଇ ଭିଡୁଥିଲେ, ରାଗରେ ଖୁବ୍ ବଳରେ ଚିଲମଟା ଭିଡ଼ିନେଲେ, ଦପ୍ କର ଜଳି-ଉଠିଲା । ମହନ୍ତ ଅଳ୍ପ ଅଳ୍ପ ଭକ୍‌ଭକ୍ କର ପାଟିରୁ ଧୂଆଁ ଛାଡୁଥାନ୍ତ, କଥାଟା ଚପି ଚପି କହିଲେ, "ଦେଖ ଚେଲାମାନେ, ଆମେ ହୁକୁମ କରବୁଁ, ଏହି ଚିଲମ ନିଆଁ କଥା କହିବ ।" ଚେଲାମାନଙ୍କର ତ

ଆନନ୍ଦର ସୀମା ନାହିଁ । ସେମାନଙ୍କର ଦୃଢ଼ ବିଶ୍ୱାସ, ମହାନ୍ତଙ୍କ ଆଜ୍ଞା ମେଣ୍ଟଣ ହେବାର ନୁହେଁ । ସେହିଦିନ ମଧ୍ୟରେ ଦେଶଯାକ ହାଟ ହୋଇଗଲା, "ଧୂନିଆବାବାଙ୍କୁ ପ୍ରଭୁଙ୍କର ସ୍ୱପ୍ନ ହୋଇଛି, ସେ ସିଦ୍ଧପୁରୁଷ ହୋଇଗଲେଣି, ତାଙ୍କ ଗଞ୍ଜେଇ ଚିଲମ କଥା କହିବ ।" ଥୋକେ ତେଲି ପ୍ରକାଶ କଲେ, ନାହିଁ ନାହିଁ ଚିଲମ ନୁହେଁ ଚିଲମ ନାଁ କଥା କହୁଛନ୍ତି ।·ଦଶଜଣଙ୍କୁ ଆଜ୍ଞା ହେଲା, ସେ ନିଜେ ଶୁଣି ଆସିଲେ । ଆଉ ଯାଏ କାହିଁ ? ତହିଁ ଆରଦିନ ସକାଳୁ ସଞ୍ଜଯାଏ ଶହକୁ ଶହ ଲୋକ ଧାଇଁଛନ୍ତି । କାହାକୁ ବେମାରି ଛାଡ଼ୁ ନାହିଁ, କାହାର ବଳଦ ହଜିଛି ମିଳୁନାହିଁ, କାହାର ମାମଲା ଦାଏର ଅଛି; ଡିକ୍ରୀ ହେଉ । ଢେର ଢେର ଝିରଲା ପା'ପୂଜା ପଠାଇଛନ୍ତି, ସେମାନଙ୍କ ପୁଅ ହେଉ ନାହିଁ, ଚିଲମ ପ୍ରଭୁ, ବର ଦେଉନ୍ତୁ । ଲୋକେ ପାଦପୂଜା ଟଙ୍କା, ଅଧୁଲା, ସୁକି ମହାନ୍ତଙ୍କ ପାଦତଳେ ଦେଇ ଅଧିଆ ପଡ଼ିଛନ୍ତି ।

ମହାନ୍ତ ମହାରାଜା ଆଜ୍ଞା କଲେ, "ଉଠ, ଉଠ ବାବାମାନେ ! ଆମେ କିଛି କହିବୁନାହିଁ, ଏହି ଯେ, ଆମ ଗଞ୍ଜେଇ ଚିଲମରେ ଅଗ୍ନି ଦେଖୁଛ, ସେଥିରେ ଧୂନି ଥାପନା ହେବ, ସେହି ଧୂନିରେ ଅଗ୍ନି-ଦେବତା ବିଜେ କରିବେ, ସମସ୍ତଙ୍କ ଗୁହାରି ଶୁଣି ବର ଦେବେ । ଆସନ୍ତା ଅଗିରିପୁନେଇଁ ଦିନ ଅଗ୍ନିଦେବତା ସ୍ୱର୍ଗରୁ ବିଜେହୋଇ ପୃଥିବୀରେ ଭ୍ରମଣ କରିବେ । ଆମ୍ଭଙ୍କୁ ସ୍ୱପ୍ନରେ ଆଜ୍ଞା କରିଛନ୍ତି, ଆମେ ଧୂନି ଥାପି ତାଙ୍କୁ ବିଜେକରାଇ ରଖିବୁ, ଯାହାର ଯାହା ଗୁହାରି ଥିବ, ପୂଜାଦେଇ ଜଣାଇଲେ ତତ୍‌କ୍ଷଣାତ୍ ବର ମିଳିଯିବ ।" ପୂଜାର ବିଧାନ ସମସ୍ତଙ୍କୁ ଶୁଣାଇ ଦେଲେ, ଧୂନିରେ ଶଏ ଆଠ ଆହୁତି ଦିଆଯିବ, ସେଥି ସକାଶେ ଖଣ୍ଡିଏ ନବ ବସ୍ତ୍ର, ପାଞ୍ଚପା

ଘିଅ, ପଞ୍ଚବର୍ଣ୍ଣ ଭୋଗ, ପଞ୍ଚବର୍ଣ୍ଣ ପୁଷ୍ପ । ଗାନ୍ଧପୂଜା ଦକ୍ଷିଣା ଯାହାର ଯାହା ଶକ୍ୟ; କିନ୍ତୁ ପାଞ୍ଚ ସୁକାରୁ ଊଣା ନୁହେଁ ।

ଅଗେଇପୂର୍ଣ୍ଣିମା ଅଧରାତ୍ତିଠାରୁ ଧୂନିପୂଜା ଆରମ୍ଭ ହେଲା । ମହନ୍ତ ମହାରାଜ ଆହୁତି ଦେବାରୁ ଅଗ୍ନିଦେବତା ହାଜର ହୋଇଗଲେ । ଧୂ—ଧୂ ହୋଇ ଜଳୁଛନ୍ତି । ଯାହାର ଯାହା ପ୍ରାର୍ଥନା, ହାତଯୋଡ଼ି ଜଣାଇଲେ । ଧୂନି ଭିତରୁ ଅଗ୍ନିଦେବତା ଗମ୍ଭୀରସ୍ୱରରେ "ହୁଁ—ନା—ହେବ ।" ଏହିପରି ଆଜ୍ଞା କରୁଛନ୍ତି । ପ୍ରତ୍ୟକ୍ଷରେ ଅବିଶ୍ୱାସ କ'ଣ ? ଲୋକମାନେ ଶୁଣି ତାଟକା, ଭକ୍ତିରେ ଭୂଇଁରେ ପଡ଼ି ଗଡ଼ି ଯାଉଛନ୍ତି । ହରିଧ୍ୱନିରେ ମଠ ଉଚ୍ଛୁଳି ପଡ଼ୁଛି ।

ଶାମସାଉ ସବୁ କଥା ଶୁଣିଲା, ଘର ମଧ୍ୟରେ ଡକାପାରି ମୁଣ୍ଡ ବାଡ଼େଇ ହେଉଛି । ଲୋକମାନେ ଧୂନି ପୂଜା କରି ବର ଘେନି ଯାଉଛନ୍ତି । ରାମାଭାଇ ବି ପୂଜା ଦେଇ ବର ପାଇବ, ମୋହର ସର୍ବନାଶ ହେବ । ଇଜମାଲି ଧନ ଊଣା ନୁହେଁ, ଲକ୍ଷକରୁ ବଳି ପଡ଼ିବ ! ସବୁ ରାମାଭାଇ ଘେନି ଯିବ । ମହନ୍ତ ମହାରାଜ ଖପାହୋଇ ଆଜ୍ଞା କରିଛନ୍ତି, "ଆଚ୍ଛା, ସେ ତେଲିଟୋକାକୁ ଦେଖିବୁଁ ।" ଏ କଥା ଶୁଣିଲାବେଳୁଁ ଶାମାର ଫାଙ୍କାଶି ଉଡ଼ିଲାଣି, କ'ଣ କରିବ, ଭାଳୁଁ ଭାଳୁଁ ଗୋଟାଏ ବୁଦ୍ଧି ଦିଶିଗଲା । ମହନ୍ତମହାରାଜ ଗଞ୍ଜେଇ ପ୍ରସାଦ ସେବକମାନଙ୍କୁ ଯାଇ ଧରିଲା । କାହାକୁ ଦଶ, କାହାକୁ ପାଞ୍ଚ ଦେଇ ସମସ୍ତଙ୍କ ଗୋଡ଼ତଳେ ପଡ଼ିଲା । ସମସ୍ତେ ଅଭୟ ଦେଇ ମହନ୍ତଙ୍କ ଗୋଡ଼ତଳେ ପଡ଼ିବାକୁ ଉପଦେଶ ଦେଲେ ।

ବେଳ ଛ' ଘଡ଼ି, ସେବକମାନେ ବେଢ଼ି ବସିଛନ୍ତି । ମହନ୍ତ ଧୂନିଠାରେ ବସି ଗଞ୍ଜେଇ ଭିଡ଼ୁଛନ୍ତି, ଜାଗାଟା ଧୂଆଁମୟ । ଶାମ

ଗୁଡି ଦାଉଁ ଦାଉଁ ପଡ଼ୁଛି । ଡରି ଡରି ଯାଇ ମୁଠାଏ ଟଙ୍କା ପାଦ-ପୂଜାପାଇଁ ଝଣକରି ମହନ୍ତଙ୍କ ପାଦତଳକୁ ଫୋପାଡ଼ି ଦେଇ ଲମ୍ବ ଲମ୍ବ ଗୋଡ଼ତଳେ ପଡ଼ିଗଲା । "ପ୍ରଭୁ ! ମୁଁ ପିଲା, ମୁଁ ମହାପାପୀ, ମୋ ଅପରାଧ କ୍ଷମାକରନ୍ତୁ ।" ମହନ୍ତ ଆଖିବୁଜି ବସି ଗଞ୍ଜେଇ ଭିଡ଼ୁଛନ୍ତି, କିଛି ଆଜ୍ଞା ହେଲନାହିଁ । ସମସ୍ତ ସେବକ ଏକାବେଳକେ ମହନ୍ତମହାରାଜଙ୍କ ଗୋଡ଼ତଳେ ପଡ଼ି ପ୍ରାର୍ଥନା କଲେ—"ହେ ମହାପ୍ରଭୁ ! ଆମ୍ଭେମାନେ ମହାପାପିଷ୍ଠ, ଅପରାଧୀ, ପ୍ରଭୁ କ୍ଷମା ନ କଲେ ଆଉ କିଏ ଜଗତରେ ଅଛି ?" ଦୟାମୟ ପ୍ରଭୁ ଏକା-ବେଳକେ ଆଜ୍ଞାକଲେ, "ଯାଓ ବେଟା, ପୂଜା ଲେଆଓ ।" ଶାମସାଉର ଆନନ୍ଦର ସୀମା ନାହିଁ, ପୂଜା ଆୟୋଜନରେ ଧାଇଁଛି । ଯେଡ଼େ ମହାଜନ, ପୂଜା ଆୟୋଜନ ସେହିପରି । ଘିଅ ପାଞ୍ଚପା ଜାଗାରେ ପାଞ୍ଚ ସେର, ଆଉ ଆଉ ସରଞ୍ଜାମ ତା' ମାଫିକେ । ସମସ୍ତେ ଖଣ୍ଡେ ଖଣ୍ଡେ ସୂତା ଶାଢ଼ୀ ଆହୁତି ଦିଅନ୍ତି । ଶାମସାଉ କୁମ୍ଭକର୍ଣ୍ଣୀ କନାରି ସଙ୍ଗ ଜରିମୁହଁଣ୍ଡା ଖଣ୍ଡେ ବରମପୁରୀ ପାଟଶାଢ଼ୀ ଆହୁତି ଦେବାଲାଗି ଆଣିଛି । ଶାମସାଉର ଘରେ ବଡ଼ ପୂଜା ହେବ । ଗାଁରେ ସେ ଦୁଇଭାଇ ବଡ଼ ଟାଣୁଆ ମହାଜନ, ଅଗ୍ନିଦେବତା ତାଙ୍କୁ କି ବର ଦେବେ ଶୁଣିବାପାଇଁ ଆଖପାଖ ପାଞ୍ଚଖଣ୍ଡ ଗାଁରୁ ମଣିଷ ଧାଇଁଛନ୍ତି । ଦୁଇଶ ଅଧିକ ପାଞ୍ଚଶହ ଲୋକ ଜମା ହୋଇ ଗଲେଣି । ବେଢ଼ାଭିତରେ ଜାଗା ନାହିଁ ।

ମନ୍ଦିର ବେଢ଼ା ପାଚେରୀଲଗା ଧାଡ଼ିଏ ଘର ଅଛି । ଗୋଟିଏ ଘରେ ମେଳା ମଉଚ୍ଛବରେ ପିଠା, ଖଜା ତିଆରି ହୁଏ, ତା ପାଖଟା ସରଘର । ସେହି ପିଠା ତିଆରି ଘରେ ଧୂନି ଥାପନା ହୋଇଛନ୍ତି । ରାତି ଅନ୍ଦାଜ ଛ'ଘଡ଼ି ସମୟରେ ମହନ୍ତ ମହାରାଜ ମନ୍ଦିର ପାଖ ଗମ୍ଭୀରାରୁ ବାହାରିଲେ । ଆଜି ପ୍ରଭୁଙ୍କ ମନରେ ଭାରି ଆନନ୍ଦ ।

ଅନେକ ଟଙ୍କା ରୋଜଗାର ମାମଲା । ତୋଳାଏ ଆମ୍ବୂ ଉପରେ ସଞ୍ଜବେଳେ ଆହୁର ତୋଳାଏ ପକାଇଛନ୍ତି । ଗଞ୍ଜେଇ ବ ବେଶିକରି ଭିଡ଼ିଛନ୍ତି । ଚାଲିବାବେଳେ ଗୋଡ଼ ଟଳି ଯାଉଛି; ଚାରିଜଣ ଚେଲା ଧରାଧରି କରି ନେଉଛନ୍ତି । ମହାନ୍ତ ବାବାଙ୍କୁ ଦର୍ଶନ କରି ସମସ୍ତ ଦେଖଣାହାରି ହରିବୋଲ ପକାଇ ଗୋଡ଼ତଳେ ପଡ଼ିଲେ । ପୂଜା ଆରମ୍ଭ ହେଲା, ପାଞ୍ଚସେର ଘିଅ ଆହୁତି, ଖୁବ୍ ମୋଟା ମୋଟା ତେର ଗୁଡ଼ାଏ କାଠ ଧୂନିରେ ଲଦିଦେଲେ । ଆହୁତି ପାଇ ଚାରିହାତ ଉଚ୍ଚ ଶିଖା ଟେକି ନିଆଁ ଧୂଧୂ ଜଳୁଛି । ଘରଭିତରେ ମହାନ୍ତ ଏକାକୀ । ପ୍ରଭୁଙ୍କର ସେହିପରି ମହିମା, ନୋହିଲେ ନିଆଁ ତେଜରେ ଆଉ କିଏ ସେ ଘରେ ପଶି ପାରିବ ? ଶାମସାଉ ବେକରେ ପଟକା ପକାଇ ହାତ ଯୋଡ଼ି ଦୁଆରବନ୍ଧ ବାହାରେ ଛିଡ଼ାହୋଇ ଧୂନି ପ୍ରହାପ୍ରଭୁଙ୍କୁ ପ୍ରାର୍ଥନା କରୁଛି । ମହାନ୍ତ ଆଖି ବୁଜି ଖୁବ୍ ପାଟିକରି ପ୍ରାର୍ଥନା କଲେ, "ଧୂନି ଜୀ ! ଶାମା ବେଟାକୁ ବରଦିଅ—ବରଦିଅ,—ବରଦିଅ, ତା' ମାମଲା ଫତେ ହେଉ ।" ଧୂନି କିଛି ଜବାବ ଦେଲେନାହିଁ । ମହାନ୍ତ ଆପଣାର କରାମତି ଲୋକଙ୍କୁ ଦେଖାଇବା ପାଇଁ ଛିଡ଼ା ହୋଇଗଲେ, ହାତରେ ଯେଉଁ ଦଶସେରିଆ ଲୁହା ଚିମୁଟା ଥିଲା, ଖୁବ୍ ବଳରେ ପାହାରେ ବାଡ଼େଇଲେ । ଭୁଷକରି ଭାରି ଗୋଟାଏ ଶବ୍ଦ ହେଲା । ଶାମସାଉ ଚମକିପଡ଼ି ଅନାଇଲା, ଘରଭିତରେ ଗ୍ରଣ୍ଡିଏ ଗମ୍ଭୀର ଗୋଟାଏ ଗାତ, ଗାତ ଅଧାଅଧି ପୂରି ନିଆଁ ଜଳୁଛି, ତା' ମଧ୍ୟରେ ଦୁଇଜଣ ଲୋକ ଭାରି ଗୋଟାଏ ଧରାପରା ଲାଗିଛନ୍ତି । ଶାମ ପ୍ରଥମରେ କିଛି ବୁଝିପାରିଲା ନାହିଁ । ମୁହୂର୍ତ୍ତିକବାଦେ ଭକ୍ତି ବଳରେ ବୁଝିଗଲା, ଧୂନି ଦେବତା ଦେହଧରି ବରାଜମାନ ହୋଇଗଲେଣି, ମହାନ୍ତଙ୍କ ସଙ୍ଗରେ କୋଳାକୋଳି କରୁଛନ୍ତି । ତାହାର ଭାଗ୍ୟ ଫିଟିଲା, ବର ମିଳିଯିବ । ମୁହୂର୍ତ୍ତିକ ମଧ୍ୟରେ ଏତେକଥା ବୁଝିନେଲା । ଖୁବ୍

ପାଟିକରି ହରିବୋଲ ପକାଇ କହିଲା, "ଧୂନି ଦେବତା ରୂପଧରି ବିଜେ ହେଲେଣି ।" ଯେତେ ଲୋକ ଥିଲେ, ଆନନ୍ଦରେ ହରିବୋଲ ପକାଉଛନ୍ତି । ମନ୍ଦିରରୁ ଘଣ୍ଟ କାହାଳି ଝାଞ୍ଜି ବାଜୁଛି, ସମୁଦ୍ର ଗର୍ଜନପରି ଶବ୍ଦ ଉଠୁଛି । ଅଗ୍ନି ଦେବତାଙ୍କୁ ଦର୍ଶନ କରିବାକୁ ଲୋକେ ଧାଇଁଲେ । ଗୋଟିଏ ବୋଲି ଦୁଆର, ଘର ଭିତରଟା ଧୂଆଁରେ ପୂରିଛି, ଦୁଆର ପାଖରେ ଧରାପରା ହୋଇ କେତେ ଲୋକ ମଡ଼ା-ଦଳାରେ ଆଣ୍ଠୁ ଛିଡ଼ ଘାଉଲା ହୋଇ ଗଲେଣି ।

ପହରେ ବିତିଗଲାଣି, ଲୋକେ ନାଚ କୁଦ ହରିବୋଲ ଦେଇ ହାଲିଆ ହୋଇ ପଡ଼ିଲେଣି । ଏ କ'ଣ ? ମଡ଼ା ପୋଡ଼ାର ଉତ୍କଟ ଗନ୍ଧ । ଲୋକେ ନାକରେ ଲୁଗା ଯାକୁଛନ୍ତି । କେତେଜଣ ଜଣାଶୁଣା ଲୋକ ଦୁଆର ପାଖକୁ ଯାଇ ଭଲ କରି ଅନାଇଲେ — ଆରେ ମହନ୍ତ ମହାରାଜ ପୋଡ଼ି ମଲେଣି ରେ । ବାଜେ ଲୋକ ବୁଝିଲେ, ଅଗ୍ନି ଦେବତା ବିଜେ ହୋଇ ମହନ୍ତବାବାଙ୍କୁ ଖାଇ ଗଲେଣି, କାଳେ ଧାଇଁ ଆସି ଆଉ ସମସ୍ତଙ୍କୁ ଖାଇଯିବେ ! ପଳା—ପଳା— ! ପଡ଼ି ଉଠି ଗୋଟାକ ଉପରେ ଗୋଟାଏ ପଡ଼ି ଧାଇଁଛନ୍ତି । ଶେଷକୁ ମନ୍ଦିରର ପୂଜାହାରି, ଟହଲିଆରୁ, କରମାନେ ବି ଗୁଡ଼ି ପଳେଇଲେଣି, ଦଣ୍ଡକ ମଧ୍ୟରେ ଏଡ଼େ ମନ୍ଦିରଟା ନଷ୍ଟନ । ଖାଲି ଧୂନି ଘରୁ ପଡ଼୍ ପଡ଼୍ ଶବ୍ଦ ଶୁଭୁଛି, ଦୁର୍ଗନ୍ଧ ବାହାରୁଛି ।

ଦେଗାଁ ପାଖକୁ ଗୋପାଳପୁର ସରକାରୀ ଥାନା ପୂରା ଅଢ଼େଇ କୋଶ ବାଟ । ସକାଳୁ ସକାଳୁ ସେଠାରେ ଖବର ପହଞ୍ଚିଗଲା । ଦାରୋଗା ସାହେବ ପାଞ୍ଚ ଛଅ ଜଣ ବରକନ୍ଦାଜ, ଆଠ ଦଶଜଣ ଚୌକିଦାର ଧରି ଧାଇଁଲେ । (ତେର ଦିନ ତଳ କଥା, ସେତେବେଳେ କନେଷ୍ଟବଳ ନ ଥିଲେ ।) ଦାରୋଗା ପହଞ୍ଚି ଦେଖିଲେ, ମନ୍ଦିର ତ ମନ୍ଦିର, ଗାଁ ଗୋଟାକରେ ଜଣେ ମଣିଷ ବି

ନାହିଁ । ସମସ୍ତଙ୍କ ଘରେ ତାଟି କବାଟ ବନ୍ଦ । ଚଉକିଆମାନେ ବହୁତ ଡକାହକା କରିବାରେ ଭିତରୁ ମାଈକିନିଆମାନେ ଜବାବ ଦେଲେ, "ପୁରୁଷ କେହି ଘରେନାହିଁ । କେହି ଯାଇଛି ଗୋରୁ ଖୋଜି, କେହି ଯାଇଛି କୁଣିଆଘର, କେହି ଜାନ୍ତଆଣ ଭୋଜି ଖାଇ, ତେର ଲୋକ ଯାଇଛନ୍ତି କଟକ ମାମଲାରେ ।" ବହୁତ ଖୋଜ-ତଲାସରେ ମନ୍ଦିର ପୂଜାହାରୀ,ଆଉ କେତେଜଣ ଚାକର ବାହାରିଲେ । ଦାରୋଗା ସରଜମିନ ତଦାରଖ କରି ବୁଝିଲେ ଯେ, ସରିଘର ଭିତରୁ ଧୂନି ମଝିଁ ଯାଏ ମନୁଷ୍ୟ ଗୋଟାଏ ଗଳିଯିବା ଭଳି ବିଲ ଖୋଲା ଯାଇଛି । ଧୂନି ତଳେ ଅଢ଼େଇ ଅଢ଼େଇ ହାତ ଲମ୍ବା ଚଉଡ଼ା, ଅଢେଇ ହାତ ଗହୀର ଗୋଟାଏ ଗହ୍ୱଡ଼ା ଖୋଲା ହୋଇଛି । ତା ଉପରେ ଚାଖଣ୍ଡେ ମୋଟା ମାଦ ମାଟି ଅଛି । ସେହି ମାଟି ଉପରେ ଧୂନି ଜଳେ । ସେ ଘର ଭିତରୁ ବିଲ ବାଟରେ ମଣିଷ ଗଳି ଆସି ଧୂନିତଳେ ବସିଥାଏ । ମହନ୍ତ କିଛି ପଚାରିଲେ ଭିତରୁ ଜବାବ ଦିଏ । ଘଟଣା ରାତିରେ ଗୋଟାଏ ଗଞ୍ଜୋଡ଼ି ଚେଲା ଧୂନି ତଳେ ବସିଥିଲା । ତା ନାମ ହୁଣ୍ଡା ଦାସ । ସେଦିନ ମହନ୍ତଙ୍କର ଭାରି ନିଶାରେ ଜ୍ଞାନ ଲୋପ ହୋଇଥିଲା । ଲାସଭାରୀ ମଣିଷ, ଭାରୀ ଚମୁଟାଟାରେ ଖୁବ୍ ବଳରେ ପାହାରେ ମାରିବାରୁ ଉପର ମାଟି ଆଉ ନିଆଁ ସବୁ ଗାତରେ ପଡ଼ିଗଲା । ଦୁଇଟା ଲୋକ ଧରାପରା ହୋଇ ପୋଡ଼ି ମଲେ । ବାହାରେ ବଡ଼ ଗୋଳମାଳ ହେଉଥିବାରୁ ସେମାନଙ୍କ ଆକୁଳ ଚିତ୍କାର କେହି ଶୁଣିପାରିଲେ ନାହିଁ ।

ଦାରୋଗା ସାହେବ ରିପୋର୍ଟ ଲେଖି ମାଇନା ସକାଳେ ଅଧପୋଡ଼ା ଲାସ ଯୋଡ଼ାକ ସଦରକୁ ପଠାଇ ଦେଲେ ❋

( ଫକୀରମୋହନ ଗ୍ରନ୍ଥାବଳୀରୁ ଗୃହୀତ )

---

❋ ଘଟନାଟି ଆଂଶିକ ସତ୍ୟ; ଘଟନା ସ୍ଥାନ ଦଶପଲ୍ଲା । ସେ ମହନ୍ତ ପୋଡ଼ି ମରି ନ ଥିଲେ । ଗୁଡ଼ିଏ ଟଙ୍କା ଉପାର୍ଜନ କରି ଧରା ପଡ଼ିଥିଲେ ।

୩

# ବାଁ ଡାହାଣ

## ଲେଖକ ସ୍ୱର୍ଗତ ପଣ୍ଡିତ ଗୋଦାବରୀଶ ମିଶ୍ର

“ଆଚ୍ଛା ତ, ଏତେ ବଡ଼ ଚଟି ଘରଟାରେ ତୁମେ ମୁଁ ଯୋଡ଼ାଏ ମୋଟେ । ବେଳ ନ ବୁଡ଼ୁଣୁ ଗୁଣ୍ଡ ଥର ଆସିଲାଣି । ଚାରିଆଡ଼େ ଖାଲି ଅଗନାଗିଣ ବନସ୍ତ । ଫେର୍ ତ ରାତି ସାରା ପଡ଼ିଛୁ ।”

“ହଁ, ଏ ଜାଗାଟା ଏଇମିତି । ଅନ୍ୟ ଗତି ନ ଥିବାରୁ ଏଠି ରହିବା କଥା । ଏଆଡ଼େ ଗଲେ ଚାରିକୋଣ, ସେଆଡ଼େ ଗଲେ ବି ସେଇ ଚାରି । ଆଖପାଖ ଗାଁଗଣ୍ଡା ବୋଇଲେ କ’ଣ ନା, କାଟେଣି, କଣ୍ଟାବାଡ଼, ଅନ୍ଧାରୁଆ, ବାଘୁଣିପଡ଼ା; ନାଁରୁ ଗୁଣ ଗରିମା ବୁଝିବ ।”

ସେ ସବୁ ଗାଁରୁ କେତେ ଗଲାଣି; ତଥାପି କେତେ ରହିଛି; କିନ୍ତୁ ସେଭଳି ବନସ୍ତ ଏବେ ଆଉ ନାହିଁ । ଘଟଣା ତ ଏବର ନୁହେଁ, ତା’ପରେ ଅନନ୍ତ କାଳପାରାବାର ବକ୍ଷରେ ତରଙ୍ଗ ଖେଳାଇ ଶହେ ବର୍ଷ ଉପରେ ବିତିଗଲାଣି । କ’ଣ ଥିଲା, ମନୁଷ୍ୟ ହାତ ଲାଗିବା ଫଳରେ ଏବେ କ’ଣ ହେଲାଣି । ଚନ୍ଦକାରେ ବର୍ତ୍ତମାନ ପୋଲିସ-ଥାନା, ଡାକ ବଙ୍ଗଳା, ଡାକଘର ବସିଛି; ଦୋକାନ ବଜାର ମଧ୍ୟ ହୋଇଗଲାଣି । ଗୋଟାଏ ମସ୍ତ ଲମ୍ବ କାଳିଆ ବୁଢ଼ା ଅଜଗର ସାପ ପରି, ଏପାଖ ସେପାଖ ବାଙ୍କରେ ମୁଣ୍ଡ ଲୁଚାଇ

ଜଙ୍ଗଲ ମଧ୍ୟରେ ସଡ଼କଟାଏ ଶୋଇଛି । ବସ୍ତ ତାମଣାଧାପ ଭଳି ତା ସହିତ ଆସି ମିଶିଛି ପୁଣି ଏକ ଗ୍ରେଟିଆ ନାଲିଆ ସଡ଼କ । ବଣରେ ଚଳ ପ୍ରଚଳ ହେବା ଲୋକେ ଚନ୍ଦକାକୁ 'ସହର ଆଖ୍ୟା ଦେଉଛନ୍ତି । କେବେ କିପରି ଖଣ୍ଡରେ ସେଠାରେ ପେଟ୍ରୋମାକ୍ସ ଆଲୁଅ ଜଳୁଛି; ରୋଜ୍ ଦୁଇ ଚାରି ଖଣ୍ଡ ସାଇକେଲ ଚାଲୁଛି; ସଡ଼କରେ ମୋଟରଗାଡ଼ି ଯାତାୟାତ କରୁଛି । ବାଘ, ଭାଲୁ ପ୍ରଭୃତି ବନ୍ୟଜନ୍ତୁ ଦୂରକୁ ବାହା- ପିଠା ପାହାଡ଼ର ଉପକଣ୍ଠକୁ ଅପସରି ଗଲେଣି । ବାପ ଅଜା ଅମଳର ଅଭ୍ୟାସ ଯୋଗେ, ବଣୁଆ ହାଖି, ଭୁଲରେ ସେ ବାଟେ ଚାଲିଗଲେ, ପରେ ଯାଇ ପଅ ଭାଇଙ୍କ ପାଖେ ଅନୁତାପ କରୁଥିବ ।

ସୂର୍ଯ୍ୟାସ୍ତ ପୂର୍ବରୁ ଦୁଇଜଣ ବାଟୋଇ, କଏ କେଉଁ ଆଡ଼ରୁ ଚଟିଘରେ ଆସି ପହଞ୍ଚିଥିଲେ ! ପରସ୍ପର ସହିତ ଚିହ୍ନା ପରିଚୟ ହେବାକୁ ତାଙ୍କୁ ସମୟ ଲାଗିଲା ନାହିଁ । ଦୁହିଁଙ୍କର ଏକତ୍ର ରୋଷେଇ କରିବା କଥା ହେଲା । ଭାତ ସାଙ୍ଗକୁ ସମ୍ବରମାଂସ ତରକାରି ଦୋପଖା ଚୁଲ୍ଲୀରେ ବସିଲା । ନିର୍ଜ୍ଜନ ବନ ମଧ୍ୟରେ ଚତୁର୍ଦ୍ଦିଗ ନିଃଶବ୍ଦ । ବାଟୋଇ ଦୁହେଁ ଚୁଲ୍ଲୀ ମୁଣ୍ଡେ ବସି ମାଂସର ମଧୁର ବାସନା ଯେପରି ଘ୍ରାଣେନ୍ଦ୍ରିୟରେ ଗ୍ରହଣ କରୁଥାନ୍ତି, ତରକାରିର ଟକମକ ଶବ୍ଦ ସେହିପରି ଆଗ୍ରହରେ ଶୁଣୁଥାନ୍ତି । ଦୁହିଙ୍କର ଜିଭ ବେଳେବେଳେ ଓଠ ଉପରକୁ ବୁଲି ଯାଉଥାଏ । କଥାବାର୍ତ୍ତା ମଧ୍ୟ ଚାଲିଥାଏ । ତା' ଭିତରେ ଥରକୁ ଥର ହରିଣପଲଙ୍କ କୁହାଟ ଓ ବାଘଙ୍କ ଗର୍ଜ୍ଜନ ଆସି କାନରେ ପଡ଼ୁଥାଏ ।

କଥାବାର୍ତ୍ତା ଭିତରେ ଜଣେ କହିଲା, "ସାହୁଏ, ତୁମେ କଏ, ଆଉ ଏ ଚଟିଘର କଏ ? ଭାଗ୍ୟକୁ ଆଜି ଦେଖା ସାକ୍ଷାତଟାଏ ହେଲା । ତୁମେ ଅଜନବି କେବେ କିପରି ସିନା ଏଠାକୁ ଆସୁଥିବ, ମୋର ତ ଏଠେଇ ଘର ବୋଇଲେ ଚଳେ । ମୋର ପନ୍ଦର ଦିନକୁ ପନ୍ଦର

ଦିନ ଆସିବା ମୁକର । ଆଜି ଉଆଁସ ନା, ଫେର୍ ପୁନିଅଁକୁ ଆସିବ ।"

ଆଚ୍ଛା, ନାହାକ ପୁଅ, "କଟକରୁ ଜିନିସପତ୍ର କ'ଣ ଶଗଡ଼ରେ ଆଣ ନା ଘୋଡ଼ିଆ ବଳଦରେ ?"

"ସେ ଏମିତି କି ଜିନିସ କି ? ଟଙ୍କା ପଚାଶ ଷାଠିଏର ମାଲ୍ ମୋ ପିଠିକି ନଅଣ୍ଟେ । ଶଗଡ଼ ବଳଦ ଲୋଡ଼ା ହେଉଥିଲେ, ଶାଗ, ପେଜ ଖାଇ ରହନ୍ତି ନା ! ଆଜି ତୁମ ସଙ୍ଗେ ପଢ଼ି ଏ ନାଲଭାଜି ଚାଖିବ । ଏଠେଇଁ ଅନେକ ଥର ହୁଏ, ବାଟୋଇମାନେ ଖାଆନ୍ତି, ମୁଁ ଆଖିରେ ଦେଖେ; ମାତ୍ର ଭଲ ଖାଇବାକୁ ପଇସା ବଳ ଥିଲେ ତ ହେଉଛି ।"

କୁଞ୍ଜ ନାୟକ ଯାଆଁଳା ଗ୍ରାମରେ ଖଣ୍ଡିଏ ଛୋଟିଆ ଲୁଗା ଦୋକାନ ଚଳାଏ । ତାହାର ଲାଭରେ ସେ ନିଜକୁ ମିଶାଇ ପାଞ୍ଚ ପ୍ରାଣୀ କୁଟୁମ୍ବ ପୋଷେ । ସେ କଟକ ଯାଇ ଲୁଗାପଟା ମୋଟା ଦରରେ କିଣି ଆଣେ, କିଛି ନଗଦ ଦେଲେ, କିଛି କାଳି ରଖି ଆସେ, ଆର ପାଳିକୁ ଶୁଝେ ।

ମଧୁସାହୁ ମହାଜନ । ତାର କୋଡ଼ିଏ କୋଶ ଆୟତନ ଧରି ସାହୁ ଖାତକ ବ୍ୟବସାୟ । ସେ ବୁଲି ବୁଲି କରଜ ଟଙ୍କା ଅସୁଲ କରେ; ଗୋଟାଏ ଅଞ୍ଚଳକୁ ପ୍ରାୟ ତିନି ବର୍ଷକେ ଥରେ ଯାଏ । ଥରକେ ସେ ଦେଢ଼ ହଜାର ଦୁଇ ହଜାର ନ ଧଇଲେ ବାଲକାଠି ଫେରେ ନାହିଁ । ସେ କାଳରେ ସଙ୍ଗରେ ଟଙ୍କା ଧରି ଯିବା ଆସିବା ଘୋର ବିପଦର କଥା; ତେଣୁ ସେ ଭିକାରୀବେଶରେ ବରାବର ରହିଥାଏ; ଚିରା ମଇଳା ଲୁଗା ପିନ୍ଧେ, ଦେହରେ ତେଲ ହାତ ବଜାଏ ନାହିଁ । ଫଳରେ ଖଣ୍ଟ, ମାରଣା ତା' ଆଡ଼କୁ ଆଡ଼ ଆଖିରେ ଚାହାନ୍ତି ନାହିଁ । ସେ କୁମ୍ଭୀର ପରି ବୁଡ଼ା ମାରି ପାଣି ପିଏ; ଅଥଚ

ବାଲକାଠିରେ ତା ଘରଟି ଗୋଟିଏ ଥିଲା ଘର । ସେ କଥା ତାର ଖାଇବା ପରପାଟିରୁ କହୁ କହୁ ଧରି ହୁଏ ମାନ ।

ଖାଇସାରି ଦୁହେଁ ଶୋଇବାକୁ ଗଲେ । ଚୁଲ୍ଲୀ ତ ଲିଭିଲା । କାଳେ ସେଥିରୁ ଝୁଲ ଉଡ଼ି ଗୃହରେ ଯାଇ ପଡ଼ିବ, ସେଥିପାଇଁ ଶୋଇବା ଆଗରୁ ପାଣି ପକାଇ ନିଆଁ ଲିଭାଇବା ପ୍ରଥା ସେ ଚଟି-ଘରେ ରହିଛି । କରଞ୍ଜତେଲ ଦୀପ ଯେ ମିଞ୍ଜି ମିଞ୍ଜି ଜଳୁଥିଲା, ତାକୁ ମଧ୍ୟ ଲିଭାଇ ଦିଆଗଲା । ମଧୁ ସାହୁକୁ ଆଲୁଅରେ ନିଦ ଲାଗେନାହିଁ; କିନ୍ତୁ ସେ ଦିନ ଏତେ ଅନ୍ଧକାରରେ ସୁଦ୍ଧା ତା ଆଖିକୁ ନିଦ ଆସିଲା ନାହିଁ । ମିରିଗ ନିକଟରେ ରହିଥିଲେ ବାଘକୁ ମଧ୍ୟ ନିଦ ମାଡୁ ନ ଥିବ । ମଧୁ ସାହୁର ଏଉଡ଼ି ଉପରେ ଏଉଡ଼ି ଆସିଲା । ଖାଲି ପେଟରେ ଗରିଷ୍ଠ ଆହାର ପଡ଼ିଗଲେ ଏଉଡ଼ି ରୋକେ କିଏ ? କୁଞ୍ଜ ନାୟକର ମଧ୍ୟ ଗୋଟେ ଅଧେ ଏଉଡ଼ି ଆସୁଥାଏ । ହାଇ, ହସ, ଏଉଡ଼ି ପ୍ରଭୃତି ଦେହର କେତେଗୁଡ଼ାଏ କ୍ରିୟା, ସହାନୁଭୂତି ଯୋଗେ ବିନା କାରଣରେ ମଧ୍ୟ ଆପେ ଆପେ ପ୍ରକାଶ ପାଇଥାଏ ।

ରହି ରହି କେତେକ ସମୟ ପରେ ମଧୁ ସାହୁ କହିଲା, "ନାହାକ ପୁଅ, ଏ ନାଲଭଜା ତ ପେଟରେ ଏମିତି ଗଡ଼ୁଥିବ, ହଜମ ହେବ ନା, ଆମକୁ ନିଦରେ ଶୋଇବାକୁ ଛାଡ଼ିବ । ଏଥିକି ହଜମି ପାଣି ଏକା ଦରକାର ।"

"ହେଲେ ଲଙ୍କାରେ ହରିନାମ ପରି, ଏ ଜଙ୍ଗଲ ଭିତରେ ପୁଣି ରାତି ଅଧରେ ହଜମ-ପାଣି କାହୁଁ ଆସିବ ? ମୋର ଅଭ୍ୟାସ ନାଇଁ, ନ ହେଲେ ଚଳିଯିବ । ତୁମେ ଟିକିଏ ବେଶି ଖାଇଚ, ତୁମରି ମୁନ୍ଦେ ଦରକାର । କ'ଣ ସାଙ୍ଗରେ ଧରିଛ ? ଖାଇବା ଲୋକଙ୍କର ନ ହେଲେ ନ ଚଳେ । ନା, ଅମଳର ତ ଦସ୍ତୁର ସେୟା ।"

"ହଁ, ଠିକ୍ କହିଲ, ନାହାକପୁଅ ! କୋଉଠିକା ଖଣ୍ଡିଏ ପଡିଲେ ମିଳିପାରେ । ମାତ୍ର ଘାସ ଜାଳିବା ତ କାଠିକର ପାଠ । ଏଇ ଅନ୍ଧାରରେ ଅନ୍ଧାରରେ ଯାହା ପିନା ହବ । ଆସ ଟିକିଏ ହାତ ଲଗାଅ । ଦ' କଣ୍ଟେଇ ପାଣି ଆଣ ।"

ଦୁହେଁ କାମରେ ଲଗିଲେ । କେତେକ ସମୟ ପରେ ମଧୁ ସାହୁ ଅନ୍ଧାର ଅନ୍ଧାର କଣ୍ଟେଇ ଦିଓଟି କୁଞ୍ଜ ନାୟକ ହାତକୁ ବଢ଼ାଇ ଦେଇ କହିଲା, "ଏଇ ଧର, ଏ ଡାହାଣ ହାତ କଣ୍ଟେଇଟି ତୁମର, ବାଁ ହାତ ମୋର । ସାବଧାନ ତଳେ ଥୁଅ ନାହିଁ । ଅନ୍ଧାର ପୁଣି ଖୋଜିଲାବେଳକୁ ଡାଳ ହୋଇ ଯାଇପାରେ । ମୁଁ କୋଉଠିଟି ବାନ୍ଧି-ବୁନ୍ଧି ରଖିଦିଏ । ଏଇଟି ତ ମୋର ସର୍ବସ୍ୱ ନା । ତୁମେ ଡାହାଣ ହାତ କଣ୍ଟେଇଟି ପିଅ । ପିଇ ସାରିଲେ ଆଉଟି ମୋତେ ବଢ଼ାଇ ଦେବ । ପିଇଲ ?

"ହଁ ।"

"ଡାହାଣ ହାତ କଣ୍ଟେଇଟି ନା ?"

"ହଁ ।"

"ଆଚ୍ଛା, ମୋତେ ଏବେ ବାଁ ହାତ କଣ୍ଟେଇଟି ଦିଅ ।"

କୁଞ୍ଜ ନାୟକ ନିଜ ବାଁ ହାତରୁ ମଧୁ ସାହୁର ଡାହାଣ ହାତକୁ ବଢ଼ାଇ ଦେଲା । ମଧୁ ସାହୁ ତିନି ଦିନ ହେଲା ପାଣି ଟୋପାଏ ମୁହଁରେ ଛୁଇଁ ନ ଥିବା ପରି କଣ୍ଟେଇକଯାକ ଏକା ରାହାରେ ଢକ୍ ଢକ୍ ପିଇ ଗଲିଗଲା । ହଜମି-ପାଣି ପିଇ, ଦୁହେଁ-ଯାକ ପୁଣି ଶୋଇଲେ । ମଧୁ ସାହୁର ମନ ଭିତରେ ଅନେକ ସମୟ ଧରି ଯେ ଗୋଟାଏ ପ୍ରବଳ ଅଶାନ୍ତ କୁହୁଳୁ ଥିଲା, ଥଣ୍ଡା ପଡ଼ିଗଲା । ସେ ନିଜକୁ ନିଜେ ଯୁକ୍ତିରେ ବୁଝାଇଲା, ଏଇଟାଇ ତ ହେଉଛି ସଂସାରର ରୀତି । ମହାନିଘାଟା ଏତେ ବଡ଼ ହେଲା କେମିତି ? ଦଶ

ଟୋକଡ଼ଏ ଗ୍ରେଟିଆ ଗ୍ରେଟିଆ ଧାର ଆସି ତା' ଦେହରେ ମିଶିବାରୁ ସିନା ! କହିଲ, ପଚଶ ପଚିଶ ଟଙ୍କାର କାରବାର । ପଚିଶ ଚୁଲିକି ଯାଉ; ପଚଶ ତ ଥିବ ? ସେଇ ପଚଶ ହେଲେ କ'ଣ ଊଣା କଥା ? ପଚଶ ପଚଶ ହୋଇ ତ ଦଶ ଥରରେ ଅଢେଇଶ; ସେଥିରୁ ପୁଣି ଆଉ ଦଶ ଥରରେ ଅଢ଼େଇ ହଜାର । ଏଥର ଆଉ ଯିବ କୁଆଡେ ? କାଲ ଅନ୍ଧାରରୁ ଉଠି ମୁଁ ତ ଚାଲିବ । ତେଣିକି ଏଟା ଯେତେବେଳେ ଉଠୁ କି ଏକାବେଳକେ ନ ଉଠୁ, ମୋର ଆସେ ଯାଏ କେତେ ?"

ହଜମି-ପାଣି କାମ ଦେଖାଇଲା; ଦୁହେଁ ଗାଢ଼ ନିଦରେ ଶୋଇ ପଡ଼ିଲେ । ଚଟିଘର ପାଉଣା ପ୍ରଚଳିତ ରୀତି ଅନୁସାରେ ଖାଇବା ପୂର୍ବରୁ ଭୁଟାଇ ଦିଆଯାଇଥିଲା । କୁଞ୍ଜ ନାୟକ ଭୋରରୁ ଉଠି ଦେଖିଲା, ମଧୁ ସାହୁର ଚେତା ଚବର ନାହିଁ । ଡାକିଲେ ସେ ନ ଶୁଣେ; ଯେତେ ହଲାହଲ କଲେ ବି ତା ନିଦ ନ ଭାଙ୍ଗେ । କୁଞ୍ଜ ନାୟକ ମନରେ ଗୋଟାଏ ଦକା ପଶିଗଲା । ଭାବିଲା କ'ଣ ମରିଗଲା ? କିନ୍ତୁ ସେ ଦେହରେ ଭଲରୂପେ ହାତଦେଇ ଦେଖିଲା ଯେ ତାନ୍ତ ରହିଛି । ନାକବାଟେ ନିଃଶ୍ୱାସ ଯିବା ଆସିବା କରୁଛି । ତହୁଁ ତା ଛାତିକୁ ଦମ୍ଭ ଆସିଲା । ସେ ତାକୁ ଆଉଁଷାପାଉଁସା କଲା । ତା ଅଣ୍ଟା ହାତକୁ ଟାଣୁଆ ଲାଗିଲା । ଲୁଗା ଅଳ୍ପ ଖସାଇବାରେ, ମଧୁ ସାହୁର ଗାଞ୍ଜିଆ ତା ଆଖିରେ ପଡ଼ିଲା । ଗାଞ୍ଜିଆ ଭିତରୁ ଟଙ୍କା ଓ ସୁନା ମୋହର ଜକ୍‌ଜକ୍ ଦିଶିଲା । ଗଣି ଦେଖିବା ମୁହୂର୍ତ୍ତ ସେ ନୁହେଁ । କୁଞ୍ଜ ନାୟକ ଅନ୍ଦାଜରେ କଳନା କଲା, ମୋଟ ଦେଢ଼ ହଜାର ଉପରେ ହେବ । ତାର ଦଶ ବର୍ଷର ରୋଜଗାର, ଗୋଟାଏ ଗ୍ରେଟିଆ ପଲକ ମଧ୍ୟରେ ତା ହାତ ପାଖେ ଥୁଆ ହୋଇ ଯାଇଛି । ତା ମୁହଁଟା ପ୍ରସନ୍ନ ହୋଇ ଆସିଲା । ସେ ଧୀରେ ଧୀରେ ଗାଞ୍ଜିଆଟି ଫିଟାଇ

ନେଇ ନିଜ ଅଣ୍ଟାରେ କଷି ବାନ୍ଧିପକାଇଲା । ତାହୁଁ ସେ ବରୁଣୀ ଠାକୁରାଣୀଙ୍କୁ ସ୍ମରଣ କରି, କାନ୍ଥରେ ମୁଣ୍ଡି ଆଟିଏ ମାରି, ଚଟିଘରୁ ବାହାରକୁ ଗୋଡ଼ କାଢ଼ିଲା । ତା ଫୁସ୍‌ଫୁସ୍‌ଟା ଗୁଡ଼ି ଭିତରେ, ଢିଙ୍କି ପାହୁରାଣୀ ପରି, ଦୁମ୍‌ଦୁମ୍ ପଡୁଥାଏ । ସେତେବେଳକୁ କୁଆ ଆହୁରି କା ରାବ ନାହିଁ ।

ସକାଳେ ଚଟିଘର ମାଲିକ ଦେଖେ ତ, ତାର ଦୁଇ ଗରାଖ ଭିତରୁ ଜଣେ ପାହାନ୍ତାରୁ ଉଠି ଚାଲିଯାଇଛି; ମାତ୍ର ଆର ଜଣକ ଆହୁରି ଉଠିନାହିଁ । ଗୋଟାଏ କାଠଗଡ଼ ପରି ପଡ଼ି ରହିଛି । ତାର ହଲଚଲ ନାହିଁ, ପାଟିରୁ ଗରଳ ବୋହିଯାଉଛି, ମୁହଁରେ ମାଛି ଗଣଗଣ ବେଢ଼ି ଯାଉଛନ୍ତି; ଅଥଚ ତା ଅବସ୍ଥା ସେତେ କିଛି ଖରାପ ହୋଇନାହିଁ, ପାଟିବାଟେ ଖୁବ୍ ଜୋରରେ ଘୁଙ୍ଗୁଡ଼ି ଚାଲିଛି । ତାର ଚେତା ହେଲା ଦୁଇ ପହର ବେଳକୁ । ସଙ୍ଗେ ସଙ୍ଗେ ତା ହାତଟା ଚାଲିଗଲା ଅଣ୍ଟାକୁ । ସେ ଉଠି ଠିଆ ହେବ କ'ଣ, ପୁଣି ଶେଯରେ କଚାଡ଼ି ପଡ଼ିଗଲା ! କେତେକ ସମୟ ପରେ ଟିକିଏ ପ୍ରକୃତିସ୍ଥ ହୋଇ, ସେ ଗାଞ୍ଜିଆ ହଜିଥିବା କଥା ଚଟିଘର ମାଲିକକୁ କହିଲା; ମାତ୍ର ଟଙ୍କାର ପରିମାଣ କମାଇ ମୋଟ ପଚାଶ ଭିତରକୁ ନେଇ ଆସିଲା । ଚଟିଘର ମାଲିକ କହିଲା, "ତାକୁ ତ ମୁଁ ଭଲ ଲୋକଟାଏ ବୋଲି ଜାଣିଥିଲି । କେବେ ତାର ଏଭଳି ଆଚରଣ ମୋ କାନକୁ ଆସି ନାହିଁ । ହେଲେ, ଆଜି ତ ଅବିଶ୍ୱାସ ଆସି ଯାଉଛି । ଯାଉଏ, ଟଙ୍କା ନେଇ ସେ ହଜମ କରି ପାରିବ ଭାବୁଛ ? ପୁଣି, ଦି'ମୁଠା ଟଙ୍କା ଏକା ବେଳକେ । ବେଙ୍ଗ ପେଟରେ ଘିଅ ପାରି ହେବ ? ତୁମେ ସିନା ଅକାଳ ସକାଳ ଗରାଖ । ସେ ତ ଆଜି ଗଲେ ପୁଣି କାଲିକି ଆସିବ । ଖାଇବ କେତେକେ ? ମୁଁ ଗୋଟିକଠାଉ ସବୁ ଟଙ୍କା ବବାକ ବାହାର କରେଇ ନ ଦେଲେ, ଏ ପଇତା ଛିଣ୍ଡେଇ

ଦେବ ! ମୋତେ ଆଉ ଦାମ ପଣ୍ଡା ପୁଅ ବୋଲିବ ନାହିଁ । ମୋ ଚଟିଘରଟାରେ କଳଙ୍କ ଲାଗିଯିବ ଟିକି ? ଆଉ ଗରାଖ ପାଦ ପକାଇବେ । ? ଯାଅ, ଦୋଳପୂନିଅଁକୁ ଆସ । ଆଜି ତ ଶିବରାତି; ଦିନ ପନ୍ଦରଟା କଥା ନା; ଆଉ କ'ଣ ? ଫଗୁ ଦଶମୀଠୋଉ ଆସିଯିବ । କିଛି ଚିନ୍ତା କର ନାହିଁ ।"

ସବୁ ଶୁଣିସାରି ମଧୁ ସାହୁ କହିଲା, "ଆଚ୍ଛା, କହିଲ, ଭାଇନା ସେ ଆସିବ, ମୁଁ ପନ୍ଦର ତାଠୋଉ ଠଙ୍କା ଅସୁଲ କରିବ । ସେ ତ ଆକାଶ କଅଁା ଚିଲିକା ମାଛ । ହେଲେ, ଆଜି ଶିବରାତି ପର୍ବ ଦିନରେ କି ଗୋଟାଏ କାଣ୍ଡ ନ ଘଟିଗଲା । ମନଟା ଛି ହୋଇଗଲା ନା । ଆମ ଗାଁଟାଯାକ ଲୋକ ଆସି ଲିଙ୍ଗରାଜଙ୍କ ଦେଉଳ ବେଢ଼ାରେ ପଡ଼ିସାରିବେଣି । ମୁଁ ଉପାସ କରିଥାନ୍ତି, ରାତିକି ଜାଗର ଜାଳିଥାନ୍ତି । ଏବେ ସବୁ ଚୂଲିକି ଗଲା, ଏଇ ଗୋଟାଏ କାଣ୍ଡରେ ।" ଲକ୍ଷ୍ମୀ ଚଞ୍ଚଳା; ଆସନ୍ତି ଯାଆନ୍ତି । ତାଙ୍କ ଆସିବାଟା ମଧୁ ସାହୁ ଜୀବନରେ ନୂଆ ନୁହେଁ; କିନ୍ତୁ ଯିବାଟା ଏଇ ପ୍ରଥମ, ତା ପୁଣି ଗୁରିପାଦରେ ଗୁଲିଯିବା । ଆସିବାବେଳକୁ ସେ ଆସିଛନ୍ତି ବରାବର ଦଶ ପଚଶରେ; ମାତ୍ର ଏବେ ଗଲେ ଅଠର ଶହରେ । ଘଟଣାଟା ମଧୁ ସାହୁକୁ ପୁତ୍ରଶୋକରୁ ବଳେଇ ଗଲା । ତାର ତିନି ପୁଅ; ସେଥିରୁ ଜଣେ ଯାଇଥିଲେ, ତାକୁ ଏତେ ବାଧା ହୋଇ ନ ଥାନ୍ତା । ପୁଣି କ'ଣ ନା; ଚୋରର ମା ନ କାନ୍ଦେ, ଯେବେ କାନ୍ଦେ ଦୁଆର କଳି କାନ୍ଦେ । ତାର ସେଇ ଦଶା ହୋଇଗଲା । ସେ ମନକୁ ମନ ଭାବିଲା, "ଠଙ୍କା ଚୁରି ପଚଶଟା ପାଇଁ ଗଲା ଅଠର ଶ । ଗଲାବୋଲି ତ ଧରିବାକୁ ହେବ ନା । ଚଟିଘର ମାଲିକ କ'ଣ ଅସୁଲ କରି ପାରିବ ସତେ ? କଲେ ତ ପରୀକ୍ଷା କରିବ । ମୁଇଁ ତ ନିଜ ହାତରେ ମୋ ବେକରେ ଛୁରୀ ଦେଇଛି । ହେଲେ, ପରୀକ୍ଷା କହିବାରୁ ସେ ସତ

ମଣିଲା । ଅଠରଶ ଶୁଣିଥିଲେ ତ ମାରି ଗୋଡ଼ାଇଥାନ୍ତା । କ'ଣ କରିବ ? ଗୋରୁକୁ ମାଇଲେ ମଲା, ଗୋରୁ ମାଇଲେ ମଲା । ଏ କ'ଣ ଓଲଟା ହେଲା ? ମୁଁ କ'ଣ ଭୁଲଟା କରିଦେଲି ? କଟେରି ତ ମୁଁ ନେଲାବେଳେ ତା ବାଁ ହାତରୁ ନେଇଛି । ଆଗ ହାତଟା ଦରଣ୍ଡି ଦେଖିଲି; ତା ପରେ ଯାଇ ନେଲି ।

ମଧୁ ସାହୁ କାନମୁଣ୍ଡା ଆଉଁଷି ଘରକୁ ଗଲା । ତା ଶିବ-ଚତୁର୍ଦ୍ଦଶୀ ବ୍ରତ ସାଥିରେ ନାମ ଯିନା ସେ ପଶୁରେ ବୁଝିଛି, ଗାଁଗଣ୍ଡାର ଖବର ଅନ୍ତରେ ତ ନେଇ ନାହିଁ । ଚଟିଘର ମାଲିକ ଜାଣିଥିଲେ ସୁଦ୍ଧା କହିଲା ନାହିଁ । ସେ ମନକୁ ମନ କହିଲା, "ଏ ତ ଖୋଳ ପର୍ବତ ମାରି ମୂଷା କାଣ୍ଡ ଲାଗିବ ନା, ମୁଁ ଯେ ଯୁଆ ଭିତରକୁ ଟଣା ହୋଇ ନ ଯିବି କ'ଣ ସ୍ଥିରତା ଅଛି ?"

ଗ୍ରାମରେ ମଧୁ ସାହୁର ମନ ଲାଗିଲା ନାହିଁ । ଅନ୍ନ ଜଳ ତାଙ୍କୁ ପିତା ହୋଇଗଲା । ସେ ଫଗୁଦଶମୀର ଦିନେ ପୂର୍ବରୁ ଚନ୍ଦକାରେ ଯାଇ ପହଞ୍ଚିଲା । ବରୁଣେଇ ଠାକୁରାଣୀଙ୍କୁ ଚାରି ପଇସା ଓ ଲିଙ୍ଗରାଜ ମହାପ୍ରଭୁଙ୍କୁ ଚାରିପଇସାର ଭୋଗ ଯାଚିଲା; ତଥାପି କୁଞ୍ଜ ନାୟକର ଦେଖା ନାହିଁ । ପୂର୍ଣ୍ଣିମୀ ପରେ ପ୍ରତିପଦା ଦିନେ ଚଟିଘରେ କଟାଇ ସେ ଦ୍ୱିତୀୟା ଦିନ ଫେରିଲା । ଚୈତ୍ର ଅମାବସ୍ୟା ଓ ପୂର୍ଣ୍ଣିମୀକୁ ମଧ ଗଲା । ବୈଶାଖ ମାସରେ ଦୁଇଥର ଯାଇ ନିରାଶ ହୋଇ ବାହୁଡ଼ିଲା । ବୈଶାଖ ପୂର୍ଣ୍ଣିମା ପରେ ଫେରିବା ବେଳକୁ ମଧୁ ସାହୁ ମନେ ମନେ ଭାବିଲା, "ଏ ତ ଛ' ଟଙ୍କାର ଘୋଡ଼ା ନ' ଟଙ୍କାର ଦାନା ଖାଇବା ଢଙ୍ଗ ହେବା ଆଡ଼କୁ ଗଡ଼ିଲା ଦେଖୁଛି । ଅଠର ଶ ପିଛା ଆଉ ଅଠର ଶ ଉଡ଼େଇବି ନା କ'ଣ ? ଆଉ ଥରୁଟେ ଆସି, ସେଥିକରେ ଏ ପାଲା ଉଜେଇଁ

ଦେବ । ସାବଣ୍ଣୀ ଅମାବାସ୍ୟାକୁ ତ ବହୁତ ଲୁଗାପଟା ଦରକାର, ସେ କଟକ ନ ଯାଇ ରହିବ କେତେବେ ?

ସାବର୍ଣ୍ଣୀ ଅମାବାସ୍ୟାର ଦୁଇଦିନ ପୂର୍ବରୁ ମଧୁ ସାହୁ ବାଲି-କାଟିରୁ ଚନ୍ଦକା ଚାଲିଛି । ଖଣ୍ଡିଏ ଆଗରୁ ଖଣ୍ଡେ ଦୂରରୁ ସେ ଦେଖିଲା ଯେ ଗଛ ଗୁଡ଼ିରେ ଗୋଟାଏ ଘୋଡ଼ା ବନ୍ଧା ହୋଇ ରହିଛି ଏବଂ ତା ନିକଟରେ ଜଣେ ଲୋକ ଠିଆ ହୋଇଛି ଓ ଆଉ ଜଣେ ବସିଛି । ବସିଥିବା ଲୋକଟି ହଠାତ୍ ଉଠି ଜଙ୍ଗଲ ଭିତରକୁ ଚାଲିଗଲା ଏବଂ ଗଲାବେଳେ ଆରଜଣକୁ କହିଲା, "ଦେଖ, ସେ ଯୋଉ ଲୋକଟା ଆସୁଛି ସେ ଆସି ଚାଲିଯିବା ପରେ, ତାଳି ମାରିଦେବୁ । ତୋ ତାଳି ଶବଦ ଶୁଣିଲେ ମୁଁ ଆସିବି । ଖବରଦାର, ସେ ସେ ବାଙ୍କ ପାରି ନ ହେଲାଯାଏ ତାଳିଫାଳି କିଛି ମାରିବୁ ନାହିଁ ।" ଆଉ ଗୁଡ଼ାଏ କଥା କହିବାକୁ ବେଳ ନ ଥିଲା । ବାଙ୍କଟା ସେଠାରୁ ପାଞ୍ଚ ଛ' ହାତ ଦୂର ହେବ । ସେ ଆଉକୁ ଆଙ୍ଗୁଠିଟା ଦେଖାଇ ଦେଇ, ଲୋକଟା ବଣ ଭିତରେ ପଶି ଅଦୃଶ୍ୟ ହୋଇଗଲା; ତେଣୁ ମଧୁ ସାହୁ କ୍ରମେ ପାଖେଇ ଆସିଲା ।

ବାଟୋଇମାନଙ୍କର ଅଭ୍ୟାସ ବାଟରେ କେହି ବିଶ୍ରାମ କରୁଥିବାର ଦେଖିଲେ, ନିଜେ କ୍ଲାନ୍ତ ନ ହୋଇଥିଲେ ସୁଦ୍ଧା; ଭାରି ଥକି ପଡ଼ିଥିଲା ପରି ଗୋଟାଏ ଦୀର୍ଘନିଃଶ୍ୱାସ ମାରି, ଲଥ୍-କିନା ବସି ପଡ଼ନ୍ତି । ସେହି ଶୁଭଯୋଗେ, ମଧୁ ସାହୁ, ଘୋଡ଼ା ବନ୍ଧା ହୋଇଥିବା ସ୍ଥାନରେ ବସିଗଲା ଏବଂ ସଙ୍ଗେ ସଙ୍ଗେ ପଚାରିଲା, ଏ ଘୋଡ଼ା କାହାର ପୁଅ ? ଲୋକଟି ଉତ୍ତରରେ ଯାହା କହିଲା, ସେଥିରେ ମଧୁ ସାହୁକୁ ଚତୁର୍ଦ୍ଦିଗ ଅନ୍ଧକାର ଦିଶିଗଲା; କିନ୍ତୁ ତା ଭିତରେ ସେ ଏକ ବଡ଼ ଆଲୋକ ଦେଖି ପାରିଲା । ତହୁଁ ସେ ପୁଣି ପଚାରିଲା, କୁଞ୍ଜବାବୁ ତ କହିଲୁ ; ପୂରି ନା କ'ଣ ?"

"କୁଞ୍ଜବିହାରୀ ପଟ୍ଟନାୟକ ।"

କୁଞ୍ଜବିହାରୀ ପଟ୍ଟନାୟକ । ଏ ନାଁ କେବେ ହେଲା ମ ? କୁଞ୍ଜ ନାହାକ ଥିଲା ପରା ?"

"ହଁ, ସବୁ ତ ଏଇ ମାସ ଦ'ଟାର କଥା । କପାଳେ ଥିଲେ ଏଇମିତ ହୁଏ । ଆଉ ତୁମର ମୋର ହୋଉ ନେଇ ? ଏ ପିଲାଦିନେ ଆମର ଘରେ ଚାକର କରୁଥିଲେ ମ । ତା ପରେ ପଳେଇଯାଇ ଖଣ୍ଡେ ଦୋକାନ କରି ବସିଲେ । ଏବେ ମୁଁ ଯାଙ୍କର ଚାକର କଲା । ହୋଉ, କେତେବେଳେ ଗାଡ଼ି ଉପରେ ଡଙ୍ଗା; ଆଉ କେତେବେଳେ ଡଙ୍ଗା ଉପରେ ଗାଡ଼ି । ଯଖ ପାଇଲେ କ ନା । ଦୁଇ ଚାରି ହଜାର ତ ଏକାଥରକେ ପାଇ ଯାଇଥିବେ । ଟଙ୍କାର କଣ ଖାପ ମାପ ଅଛି ? ଯାଆଁଳାରୁ କଟକ ଆଉ କଟକରୁ ଯାଆଁଳା ଚାଲି ଚାଲି ପାଦରୁ ପ୍ରସ୍ତେ ଚମ ଉଡ଼ି ଯାଇଥିଲା ଟି କ ? ଏବେ ଆଉ ତଳେ ପାଦ ଲାଗୁଛି ।" ଚାକର ଆଉ କଣ ଅବା କହିଥାନ୍ତା । ମଧୁ ସାହୁ ପଟ୍ଟନାୟକଙ୍କୁ ଦେଖିବା ପାଇଁ ବ୍ୟସ୍ତ ହୋଇ ପଡ଼ିଥିଲା । ପଚାରିଲା, "କୁଆଡ଼େ ଯାଇଛ ।"

କେଜାଣି, କଣ କାମ ଫାମ ଥିବ । ତୁମେ ଆଉ କାହିଁକି ବସିଲ ମଉସା ? ବାଟୋଇ ଲୋକ, କୋଉ ବ୍ୟବସାୟରେ ଯାଇଥିବ; ଅକାରଣ ସମୟ କାହିଁକି ନଷ୍ଟ କରିବ ?

ମୋର ଆଉ ବ୍ୟବସାୟ କଣ ? ମୁଁ ତ ତୋର ଖାଉନ୍ଦ ପାଖକୁ ଯାଉଥିଲି । ଭାଗ୍ୟକୁ ଏଇଠେଇଁ ହାବୁଡ଼େ ପଡ଼ିଲା । ଦେଖାଟାଏ ହୋଇଗଲେ ଚାଲିଯିବି ।"

"ସାବିତ୍ରୀ ଅମାବାସ୍ୟା ବୋଝଭାର ଧରି କାଁ ଭାଁ ଜଣେ ଅଧେ ଯାଉଥାନ୍ତି । ସେମାନେ ଗୋଟାଏ ପାଖରେ ବାଙ୍କରେ ବାହାରି, ଅନ୍ୟ ପାଖେ ପ୍ରାୟ ପାଆକ ଦୂରରେ ବାଙ୍କରେ ପୁଣି ଲୁଚିଯାଆନ୍ତି ।

ଏପରି ତିନି ଘୃରି ଜଣ ଗଲେ । ମଧୁ ସାହୁ ମଧ ପ୍ରତି ବର୍ଷ ଘରି ଧରି ଝିଅ ଘରକୁ ଯାଏ । ମାତ୍ର ଏ ବର୍ଷ ସେ ସବୁ କଥା ଛାଡ଼ି ଦେଇଛନ୍ତି; ତେଣୁ ଅନ୍ୟଲୋକଙ୍କର ଘରଥୋର ଆଡ଼କୁ ଚୃହିଁବାକୁ ସୁଦ୍ଧା ତାର ମନ ଯାଉ ନ ଥିଲା । ନାହାକପୁଅ କେତେବେଳକୁ ଆସିବ, ତାହାହିଁ ତାର ଏକମାତ୍ର ଚିନ୍ତାର ବିଷୟ । ମାଧ୍ୟାକର୍ଷଣ ତଥ୍ୟ ବାହାର କଲାବେଳେ ସୁଦ୍ଧା ନିଉଟନ୍ ଏତେ ଚିନ୍ତାମଗ୍ନ ହୋଇ ନ ଥିବେ ।

କୁଞ୍ଜବିହାରୀ ତାଳ ଶବ୍ଦ ଶୁଣିଲେ ନାହିଁ । କାନ ପାରି ପାରି ନଯ୍ୟାନ୍ତ ହୋଇ ଗଲେଣି; ତଥାପି ଘୃକରଟା ତାଙ୍କ ଫେରିବା ଇସାରା ଦେବାକୁ ନାହିଁ । ଗଛମୂଳେ ବୁଦା ଆଡୁଆଳରେ କେତେ ଆଉ ଏଣିକ ତେଣିକ ହେବ ? ଶେଷକୁ ସେ ଭାବିଲେ, "ଏମିତିରେ ଚଳିବ ନାହିଁ; ଗୋଟାଏ କିଛି ବୁଦ୍ଧି କାଢ଼ିବା ଦରକାର ।" ବୁଦ୍ଧି ଦିଶିଗଲା, ସେ ଜଙ୍ଗଲ ଭିତରୁ ବାହାରି ପଡ଼ି ଆସି କହିଲେ, "କହୋ ସାଉଏ, ଏତେ ଦିନକେ ଧରାଟି ପଡ଼ିଲ । ଛଅମାସ ହେଲା ମୁଁ ଖୋଜି ଲାଗିଛି । ଭାଗ୍ୟକୁ ବଞ୍ଚିଗଲ । ହଜମ ପାଣି ନାଁରେ ମୋତେ ଗୁଡ଼ାଏ ଗରଳ ପିଆଇ ଦେଇ; ମୁଁ ମଡ଼ାଟା ପରି ପଡ଼ିଛି, ମୋ ଅଣ୍ଟାରେ ଟଙ୍କାଟୋକର ଯାହା ଥିଲା, ସବୁ ଦରାଣ୍ଡି ଦୁରୁଣ୍ଡି ନେଇ ଚମ୍ପଟ୍ । ଆୟୁବଳ ଥିବାରୁ ମୁଁ ପ୍ରାଣ ଧରି ଆସିଲି । କି ବାଟମାରଣା ପଣ କଲ ହେ । ଛି, ଛି, ଛି, ।"

ମଧୁ ସାହୁ ପାଟିରୁ କଥା ବାହାରିଲା ନାହିଁ । ସେ ଜଳକାଙ୍କ ପରି ଚୃହିଁ ରହିଛି, ପଟ୍ଟନାୟକେ ଘୋଡ଼ା ଉପରକୁ ଉଠି, କୋରଡ଼ାରେ ପଛକୁ ପିର୍ କିନା ଛାଟେ ପିଟି ଦେଲେ । ଧ୍ୱନିଟା ବନ ଦେଶରେ ପ୍ରତିଧ୍ୱନିତ ହୋଇ ଆଉ ଦିଗିଷୟ ଛାଟର ଅପେକ୍ଷା ରଖିଲା ନାହିଁ । ଘୋଡ଼ା, ଗୋଟାଏ ହେ ସାରବ ଛାଡ଼ି, ଗୃରିଗୋଡ଼ ଟେକି

ଦଉଡ଼ିବାରେ ଲାଗିଲେ । ଗଲାବେଳେ ପଟ୍ଟନାୟକ କହିଗଲେ, "ମଧୁ ସାଉ, ବିଦ୍ୟାଟା ଆହୁରି ପୂରା ହାସଲ ହୋଇ ନାହିଁ । ଆଉ ଡାହାଣ ବାଁ ଧରି କାମ କରିବ ନାହିଁ ଏଣିକି ।"

କୁଞ୍ଜବିହାରୀ ପଟ୍ଟନାୟକଙ୍କ ଆଗ ବାଙ୍କରେ ଅଦୃଶ୍ୟ ହୋଇଗଲେ । ମଧୁ ସାହୁ ଅନେକ ସମୟ ଗୋଟାଏ ପଥର ମୂର୍ତ୍ତି ପରି ନୀରବ ନିଶ୍ଚଳ ଭାବରେ ଠିଆ ହୋଇ ରହିଲା । କେତେବେଳେ ପୁଣି ତା ନାକକୁ ନିଃଶ୍ୱାସ ଆସିଲା, ସେ ବୁଝି ପାରିଲାନାହିଁ; କିନ୍ତୁ ପଟ୍ଟନାୟକ ଚାଲିଗଲାବେଳେ ଯେଉଁ ଦୁଇ ଚାରି ପଦ କଥା କହିଗଲେ, ସେଥିରେ ତାର ଗୋଟାଏ ଜ୍ଞାନୋଦୟ ହେଲା । ଯାହା ତିନି ମାସ କାଳ ତା ପକ୍ଷେ ଗୋଟାଏ ଅବୋଧ ରହସ୍ୟ ହୋଇ ରହିଥିଲା, ସେ ତା ଭିତରେ ପଶି ପାରିଲା । ତହୁଁ ସେ ସାତଥର କାନ ମୋଡ଼ି ହୋଇ ଏ ଗାଲ ସେ ଗାଲ ନିଜ ହାତରେ ଚଉଦ ଚଟକଣି ବସାଇଲା । ସେ ଶବ୍ଦରେ ପାଖ ଗଛରେ ବସି ଚେଁ ଚାଁ ହେଉଥିବା ଚଢ଼େଇଗୁଡ଼ାକ ପଲ ପଲ ହୋଇ ଫର୍‌ଫର୍ ଉଡ଼ି ଚାଲିଗଲେ ।

ମଧୁ ସାହୁ ସେଠାରେ ନିର୍ବେଦ ହୋଇ ଅନେକ ସମୟ ବସି ରହିଲା । ସେ ଅବସରରେ ସେ ମନକୁ ମନ କହିଲା, "ଓଃ, କି ଭୁଲଟାଏ ନ କଲି କି ? ଯେ ଶୁଣିମ, ହସିବ, ମତେ ଧିକ୍କାର କରିଦେବ । ମୁଁ ତ ମୋ କଟଣିକ ପିଇ ସାରି ତା ହାତକୁ ଆରି କଟଣିଟା ବଢ଼େଇ ଦେଇଥାନ୍ତି । ଏତେ ଡାହାଣ ବାଁ ହାତ କଥା କହିଥାନ୍ତି କାହିଁକି ? ତା ମନକୁ ପାପ ଛୁଇଁ ଦେଲା ସେଇ କଥାତକ । ସେ ହାତ ବଦଳେଇ ଦେଲା । ପ୍ରକୃତରେ ମୋର ବିଦ୍ୟାଟା ପୂରାପୂରି ହାସଲ ହୋଇ ନାଇଁ, କୁଞ୍ଜ ନାହାକ ଠିକ୍ କହିଛି ।

ଏତିକି କହି ମଧୁ ସାହୁ କୋଥଳିରୁ ଦୁଇ ମେଞ୍ଚା ଜିନିଷ ବାହାର କରି ଦେଲା । ମେଞ୍ଚାଏ କେବଳ ଗଞ୍ଜେଇବଟା; ଆଉ

ମେଞ୍ଚାକରେ ଦୁଦୁରା ମଞ୍ଜି ଓ ଶଙ୍ଖୁଆ ବଣ୍ଠା ମିଶିଥିଲା । ସେପରି ଦୁଇ ମେଞ୍ଚା ବରାବର ସଙ୍ଗରେ ଧରିଥାଏ । ସେ ନରହନ୍ତା ନୁହେଁ, ଅର୍ଥଲୋଭୀ ମାତ୍ର । ଚନ୍ଦକା ଚଟିଘରେ ସେ କୁଞ୍ଜ ନାୟକକୁ କେବଳ ଚେତା ବୁଡ଼ିବା ଭଳି ବିଷାପ୍ରୟନ ଦେଇଥିଲା । ଘଣ୍ଟେଣାର ବ୍ୟବଧାନରେ ସେତକ ପୁଣି ନିଜ ପେଟରେ ପଡ଼ିବାକୁ ଥିଲା । ସେଦିନ ସେ ଦୁଇ ମେଞ୍ଚାଯାକ ଖଣ୍ଡିଗିରି ବନ ମଧ୍ୟକୁ ଯେ ଫିଙ୍ଗିଦେଲା, ପରେ ଜୀବନସାରା ଆନ୍ତ୍ରଥରେ ସେ ଜିନିଷକୁ ତା କୋଥଳିରେ ସ୍ଥାନ ଦେଇ ନାହିଁ ।



# ତୁମେ କିଂ ସତେ ପାଷାଣ ହେଲ !

## ସ୍ୱର୍ଗତ ଗୋଦାବରୀଶ ମହାପାତ୍ର

—ଏକ—

ନଗରର ଗିରିପ୍ରଗିରି ଗଳିଗୁଡ଼ିକ କମଳିର ଖୁବ୍ ପରିଚିତ । କମଳି ଯାଏ ଗଳି ଉପଗଳି ପ୍ରତ୍ୟେକ ଦୁଆରକୁ; ମାତ୍ର ସେ କେଉଁଠୁ ମଧୁ ଟିକିଏ ତ ପାଏ ନାହିଁ, କାହା ମୁହଁରୁ ମଧୁରବଚନ ପଦେ ସୁଦ୍ଧା ଶୁଣେ ନାହିଁ । ତାକୁ ଦେଖି କିଏ ଆଖି ତରାଟି ମୁହଁ ବୁଲେଇ ଦିଏ, କିଏ ଦେଖି ନ ଦେଖିଲା ପରି ଠିଆ ହୁଏ, କିଏ ପାଣି ଫିଙ୍ଗେ, କିଏ ବା ଧୂଳିମାଟି ଫିଙ୍ଗି ତାହା ସହିତ ନିଷ୍ଠୁର କୌତୁକ କରେ; ତଥାପି ସେ ଯାଏ—ପ୍ରତ୍ୟେକ ଦୁଆରେ ଠିଆ ହୁଏ—ପ୍ରତ୍ୟେକ ଦୁଆରୁ କିଛି ନା କିଛି ପାଏ – ଗାଳି ହେଉ, ମାଡ଼ ହେଉ ବା ଅତି ବେଶି ଖୁଦ ମୁଠେ ହେଉ ।

କେବେ ଦ୍ୱାପରଯୁଗରେ ସୁଦାମା ଥିଲା ବଡ଼ ଦରିଦ୍ର । ଏତେ ବଡ଼ ଯୁଗ—କେତେ ହଜାର ବର୍ଷ ହୋଇଥିବ କିଏ କହିବ ? ସେହି ବିରାଟ କାଳସମୁଦ୍ର ଭିତରେ ଜଣେ ମାତ୍ର ବାହାରିଲା ଦରିଦ୍ର, ପୁରାଣ ତା କାହାଣୀ ବୁକୁରେ ବହିଲା । ଭଗବାନ ଶ୍ରୀକୃଷ୍ଣ ତାର

ସାଥୀ ହେଲେ । ଦ୍ୱାପରଯୁଗର ମହାଭାରତ ଯୁଦ୍ଧଠାରୁ ଏହି ଦରିଦ୍ର ସୁଦାମାର କାହାଣୀ ବଡ ରହସ୍ୟମୟ !

କିନ୍ତୁ ଏ କଳିଯୁଗରେ—ବିଂଶ ଶତାବ୍ଦୀର ପ୍ରଥମପାଦର ଠିକ୍ ପରବର୍ଷ ପୁରୀ ସହର ଭିତରେ କମଳ ଯାହା କଲା, ସେ କଥା ଦ୍ୱାପରର ମହାଭାରତରେ ନ ହେଲେ ମଧ୍ୟ ଏକାଳ ଓଡ଼ିଶାରେ ଐତିହାସିକମାନଙ୍କ ଗବେଷଣା ଖାତାରେ ନିଶ୍ଚୟ ସ୍ଥାନ ପାଇବ ।

—ଦୁଇ—

କମଳ କେବେ ତାର ଭିକ୍ଷାର ଝୁଲି ଧରି ପୁରୀ ବଡ଼ଦାଣ୍ଡରେ ପହଞ୍ଚିଲା, ଏକଥା ଯାତ୍ରୀପ୍ରିୟ ପଣ୍ଡା ପଡ଼ିଆରୀ ଜାଣିବାର କିଛି କାରଣ ନାହିଁ, ପ୍ରାସାଦବାସୀ ମଠମହନ୍ତ ବୁଝିବାର ଉପାୟ ନାହିଁ ବା ବ୍ୟବସ୍ଥାଦାତା ପଣ୍ଡିତଗଣ ଜାଣିବାର ଅବସର ନାହିଁ । ଏକଥା କେବଳ ଜାଣେ ଗୋଟିଏ ଗ୍ରେଟିଆ ରୁଟିଦୋକାନର ମାଲିକ ନାଥ ।

ଦିନେ ସନ୍ଧ୍ୟାବେଳେ—ମନ୍ଦିର ଭିତରେ ଯେତେବେଳେ ସନ୍ଧ୍ୟା ଧୂପ ଉଠିଲା, ନୀଳଚକ୍ର ଉପରେ ଯେତେବେଳେ ପତାକା ଉଡ଼ାଗଲା, ଭକ୍ତର କରତାଳ ରୋଳ ଯେତେବେଳେ ମହୋଦଧିର ମହାସଙ୍ଗୀତକୁ ଚପିଉଠିଲା, ସେତିକବେଳେ କମଳ ନାଥର ଦୋକାନ ଦୁଆରେ ଠିଆହୋଇ ପଚାରିଲା—"ଏଇଠି କଣ ବାଟ ସରିଯାଇଛି ?"

ନାଥ କମଳର କଥା କିଛି ବୁଝିପାରିଲା ନାହିଁ । ପଚାରିଲା—"କୁଆଡ଼େ ? ଦେଉଳକୁ ?"

କମଳର ଶ୍ରମକ୍ଲାନ୍ତ ଶରୀରଟା ବଡ଼ଦାଣ୍ଡର ସେହି ନାଳ ଧୂଳି ଉପରେ ତଳି ପଡ଼ିଲା । ଆଉ ସେ କଥା କହିପାରିଲା ନାହିଁ । ଦେଖି ଦେଖୁ କାହୁଁ ପାଞ୍ଚଜଣ ଆସି ପାଖରେ ଠିଆହେଲେ,

କଏ କେତେ କଥା କହିଲେ ! କେତେକ ପ୍ରକାର କଏ ଡାକିଲେ ! କାହାରି କଥା ତା କାନକୁ ଶୁଭିଲା ନାହିଁ ।

ସହରର ଜନ ସଂଖ୍ୟାରେ ଏହି ଯେ ଗୋଟିଏ ଲୋକ ବୃଦ୍ଧି ହେଲା; ଏଥିରେ କାହାରି ଆନନ୍ଦର କାରଣ ନାହିଁ; ବରଂ ଦୁଃଖ କରିବାପାଇଁ ବହୁତ କାରଣ ଅଛି । ଭିକାରୁଣୀ ଯେ ଭିକ ମାଗିବ, ଦ୍ୱାରେ ଦ୍ୱାରେ ବୁଲିବ, ବାଟେ ଘାଟେ ଲୋକଙ୍କୁ ଅଟକାଇ ହାତ ପାତିବ, ସହରବାସୀ ଏକଥା ପସନ୍ଦ କରିବା କଥା ନୁହେଁ; ତେଣୁ ତାର ଏ ଆଗମନ ଉପଲକ୍ଷରେ ସିଂହଦ୍ୱାରେ ସଭା ହେଲାନାହିଁ, କି କାହା ଘରେ ଅଧିକା ଖପଟିଏ ଜଳିଲା ନାହିଁ, ତା ନାଁରେ ଚନ୍ଦା ଅସୁଲ ହେଲା ନାହିଁ, କି ତା କଥାକୁ ସମର୍ଥନ କରାଯାଇ ତାଳି ମରା ଗଲା ନାହିଁ । କେବଳ ଏତିକି ହେଲା, ତାର ନାମକରଣ ହେଲା 'ପାଗଲୀ' ! ସମାଜର ଗତିବେଗରେ ଭସି ଆସି ପୁରୀ ଜନ-ସମୁଦ୍ର କୂଳରେ ଲାଗିଥିବା ବହୁ ପାଗଲୀଙ୍କ ଭିତରେ ସେ ହେଲା ଜଣେ ବଡ଼ ପାଗଲୀ । ତାକୁ ପୁରୀର ପାଗଲୀକୂଳ ଘାରୀ କହିଲେ ଚଳିବ ।

—ତିନି—

ପାଗଲୀ କମଳା ଯେତେବେଳେ ଟିକିଏ ଥଣ୍ଡା ପବନ ପାଇ ଆଖି ଫିଟାଇଲା, ଦେଖିଲା, ବଡ଼ଦାଣ୍ଡଟା ବନ୍ୟାଧୌତ କାକଟ-ପୁରର ବାଲି ଗହ୍ୱାର ପରି ଖାଲି ପେଟ ଦେଖାଇ ପଡ଼ିଛି, ତାହାରି ଭିତରେ ଥାଇ ସେ କାହାକୁ ଲକ୍ଷ୍ୟ କରି ପୁଣି ପଚାରିଲା--"ବାଟ କାହିଁ ?"

ନାଥ ଦୋକାନ ବନ୍ଦ କରିବାକୁ ଯାଉଥିଲା । ଏ ପ୍ରଶ୍ନ ଶୁଣି ଟିକିଏ ଆଶ୍ୱସ୍ତ ହୋଇ ପଚାରିଲା--"କଲୋ ପାଗଳୀ, କୁଆଡ଼େ ଯିବୁ ?"

ଵଅଁଙ୍କ ପାଖକୁ·····"

"ଦେଉଳ ଦୁଆର ପଡ଼ିଲାଣି ! କାଲି ସକାଳେ ଫିଟିବ ।"

"ଆହା ! ଆହୁରି କାଲି ସକାଳକୁ ?" ଏହା କହି ଏକ ଦୀର୍ଘ-ନିଃଶ୍ୱାସ ସେ ଛାଡ଼ିଲା । ନାଥ ତା ଦୋକାନରେ ବଳକା ଥିବା ଖଣ୍ଡେ ରୁଟିରେ ପୋଟ୍ଟପୋଟ୍ଟି ତରକାରି ମେଞ୍ଚାଏ ଧରି ତାକୁ କହିଲା— "ଧର, ନେ—ଖା । ପାଗଲୀଟା, କୁଆଡ଼ୁ ଆସିଲୁ ?" "ଆସିଲି ଗାଁରୁ"—କହି କମଳି ସେ ଖଣ୍ଡିକ ଧରି ଏକାଗ୍ରତାରେ ଖାଇବାକୁ ଲାଗିଲା । କେତେ ଯୁଗରୁ ଯେ ସେ ଭୋକିଲା ଥିଲା, ତାହା ତାର ଖାଇବା ଢଙ୍ଗରୁ ଜଣାପଡ଼ୁଥିଲା । ନାଥ ସେହି ଅଧରାତ୍ରିରେ ତାହାର ଆଗରେ ଠିଆହୋଇ ସେ ଦୃଶ୍ୟ କେବଳ ନୀରବରେ ଦେଖିଲା ।

ଏହି ହେଉଛି ନାଥ ସହିତ କମଳାର ପ୍ରଥମ ପରିଚୟ । ସେହି ଦିନୁ କମଳି ପ୍ରତିଦିନ ସନ୍ଧ୍ୟାବେଳକୁ ନାଥ ଦୁଆରେ ଆସି ହାଜର ହୁଏ; ମନ ମୁତାବକ କ'ଣ କେତେ କଥା କହେ । କେବେ ଖାଏ, କେବେ ନ ଖାଏ, କେଉଁଠି ଶୁଏ—ନାଥ ଛଡ଼ା କେହି ତାର ଖୋଜ ଖବର ରଖନ୍ତି ନାହିଁ ।

କମଳି ପ୍ରତିଦିନ ସକାଳୁ ଉଠି ଯାଏ ଭିକ ମାଗି । ମାତ୍ର ସେ ଭିକ ମାଗିଲା ପରି ଲାଗେ ନାହିଁ । ଏ ଗଳିରୁ ସେ ଗଳି, ଏ ଦୁଆରୁ ସେ ଦୁଆର ବୁଲି ବୁଲି କେବଳ ଯା ମୁହଁକୁ ତା ମୁହଁକୁ ବଲବଲ କରି ଚାହିଁ ରହେ । ତାକୁ ଦେଖି କିଏ ହସିଦିଏ, କିଏ କ'ଣ ପଚାରି ଦିଏ, କିଏ ବା ହାତ ଟେକି ପଇସେ ଅଧଲେ ଦିଏ । ତାହା ଛଡ଼ା ଅଇଁଠାପତ୍ର ଯେଉଁଠି ପଡ଼େ, ବେଳେ ବେଳେ ସେଇଠି ତାର ଆସନ ଜମେ ।

-ଗୃହ-

ସମସ୍ତେ ଦେଖନ୍ତି, କମଳ ସବୁ କରେ, ମାତ୍ର ଭିକାରୁଣୀ ମେଳରେ ବସେ ନାହିଁ । ଯେବେ କେହି ଭିକାରୁଣୀ ଦୁଃଖହତାଶରେ ଡ଼ାକ ପକାଏ—"ପ୍ରଭୁ ହେ, କାହିଁ ଅଛ," କମଳ ହସିଦିଏ । ତାକୁ ପଚାରେ—"ତୋର ପ୍ରଭୁ କେଉଁଠି ଅଛି କହେ ?"

ସେ ରାଗିଯାଇ ଉତ୍ତର ଦିଏ—"ଅମଙ୍ଗୁଳଟା, ତତେ କଣ ଦେଉଳ ଦିଶୁନାହିଁ କହେ !"

କମଳର ଆହୁରି ହସ ବାହାରେ । ସେ ନାଚି କୁଦି କହେ—"ସତେ ! ଦେଉଳରେ ପ୍ରଭୁ ଅଛନ୍ତି ! ସେ କ'ଣ ତମ ଡ଼ାକ କେବେ ଶୁଣନ୍ତି !"

ସେ ଭିକାରୁଣୀ ଆହୁରି ପାଟିକରି ବକେ—"ଆଲୋ ନିଅଁଶୀ ଘରର ପିଲା, ତୋ ଦିଅଁ କ'ଣ ଦାଣ୍ଡରେ ବାଟରେ, ଘାଟରେ !"

କମଳ କହେ—"ହଁ, ହଁ, ଠିକ୍ କଥା କହିଚ, ଠିକ୍ କଥା; ମୋର ଦିଅଁ ଏହି ଦାଣ୍ଡରେ କେଉଁଠି·····ମୁଁ ପରା ନିତି ସକାଳୁ ଉଠି ବେଲବୁଡ଼ିଯାଏ ମୋର ଦିଅଁଙ୍କୁ ଖୋଜୁଛି !"

ସେ ମୁହଁକୁ ମୋଡ଼ି କହେ—"ଖୋଜୁଥା ଲୋ, ଅମଙ୍ଗୁଳି, ଖୋଜୁଥା, ଲଜ ନାଇଁ !!"

କମଳ ହସି ହସି ତାର ଭୂଭୁରି ମୁଣ୍ଡକୁ ହଲେଇ ହଲେଇ ସେଠୁ ଧାଇଁ ଚାଲିଯାଏ । ଯେଉଁଠି ଲୋକ ଗହଳ ବେଶୀ, ତା'ରି ଭିତରେ ଠିଆହୋଇ ଗୋଟି ଗୋଟି କରି ସମସ୍ତଙ୍କ ମୁହଁକୁ ଚାହେଁ, ଲୋକେ ପାଗଳୀ ପାଗଳୀ କହି ସେଠୁ ଘୁଞ୍ଚିପଳାନ୍ତି । ପାଗଳୀ କହେ, "ନାଇଁ, ମୋ ଦିଅଁ ନାହାନ୍ତି ଏଠି, ନାହାନ୍ତି ଏଠି !"

ଦିନେ ନୁହେ, ମାସେ ନୁହେ, ଦୁଇବର୍ଷ କାଳ ପାଗଳୀ କମଳ ପୁରୀସହରର ଭିତରେ ଏହିପରି ତାର ଦିଅଁ ଖୋଜିବାରେ ଲଗିଲା । ଏକଥା ସେ ଗୁରିଆଡେ ଡାକ ବଜେଇ କହିଲା । ଯେ ଶୁଣିଲା, ସେ ହସିଲା । ଲୋକେ କି ଦିଅଁ ଖୋଜନ୍ତି ? ବଡ଼ ବଡ଼ ପଣ୍ଡିତ ମଧ୍ୟ ଏ କଥା ଶୁଣି ହସିଲେ । ଯେ ଦେଖିଲା, ଥଟ୍ଟା, ଟାହୁଲି କରି କଥାକୁ ଉଡ଼େଇ ଦେଲା ।

ଦିନେ ନାଥ ପଚାରିଲା—"ହଇ ଲୋ ପାଗଳୀ, ତୁ, କ'ଣ ସତେ ପାଗଳୀ ?"

"ନାଁ—ନା, ମୁଁ କାହିଁକି ପାଗଳୀ ହୁଅନ୍ତି······?"

"ତାହାହେଲେ ତୁ ଆଉ କେଉଁ ଦିଅଁକୁ ଖୋଜୁଛୁ ?

ପାଗଳୀ ଖୁବ୍ ଆଗ୍ରହରେ କହିଲା, "ମୋ ଦିଅଁକୁ ।"

ନାଥକୁ ବଡ଼ କୌତୂହଳ ବୋଧ ହେଲା ! ପଚାରିଲା—ତୋ ଦିଅଁ କ'ଣ ଅଲଗା ଗୋଟାଏ ? ଦିଅଁ ତ ଦେଉଳରେ, ଆଉ କ'ଣ ସେ ବାଟରେ ଘାଟରେ ପଡ଼ିଛନ୍ତି ଯେ, ତୁ ଖୋଜୁଛୁ ?

ନାଥର କଥା ପାଗଳୀ ମନକୁ ଆଦୌ ପାଇଲା ନାହିଁ । ସେ ହସି ହସି ଭାଜ ପଡ଼ି କହିଲା—'ଦେଉଳର ଦିଅଁ କ'ଣ ବାଟରେ ଘାଟରେ ବୁଲି ପାରିବେ କି ? ମୋ ଦିଅଁଙ୍କୁ ମୁଁ ବାଟ ଘାଟ ସବୁ ଆଡ଼େ ବୁଲିବାର ଦେଖିଛି । ମୋ ଘରକୁ ସେ ଯିବାର ମୁଁ ନିଜ ଆଖିରେ ଦେଖିଛି । ଆଉ······ଦେଉଳରେ ଦିଅଁ······।"

ନାଥର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ବିଚାରିଲା ପାଗଳୀକି ଯେତିକି ପଚାରିବ, ତାର ପାଗଳାମି ସେତିକି ବଢ଼ିବ । ଏସବୁ କଥା ସ୍ତ୍ରୀ'ର ପାଗଳାମି ଛଡ଼ା ଆଉ କିଛି ନୁହେଁ ।

-ପାଞ୍ଚ-

ଦିନେ କମଳର ପାଗଲାମି ବେଶି ବଢ଼ିଲା । ଖଣ୍ଡିଆ ଭୂତ ପରି କୁଆଡ଼ୁ ଧାଇଁ ଆସି ନାଥକୁ କହିଲା—"ଦେଖିଲ……ମୋ' ଦିଅଁଙ୍କୁ ଏତେ ଦିନକେ ଦେଖିଲି । ଏ ଦୁଃଖ ଦେଖି ଦେଖି ମୋର ଦିଅଁ ପଥର ପାଲଟି ଯାଇଛନ୍ତି ! ଆହା, ଆଉ ପଦେ ହେଲେ ସେ ମୁହଁରୁ ଶୁଣିଥାନ୍ତି ।"

ନାଥ ଅବାକ୍ ହୋଇ ତା ମୁହଁକୁ ବଲବଲ କରି ଚାହିଁ ରହିଲା । କେତେ କ'ଣ ଭାବି କିଛି ସମୟ ପରେ ପଚାରିଲା—"ହଇ ଲୋ ପାଗଲି ! ତୋର ଦେବତା କିଏ ଲୋ ?" "କିଏ ? ତୁମେ କାହିଁକି ଜାଣିବ ? ତମେ ଏଠି ଅଛ ସହରରେ । ଦୁଃଖ କ'ଣ ବୁଝୁନା । ଓଳିକେ ତିନି ତିନି ଥର ଖାଉଚ । ଗୋଡ଼ ହାତରେ ମଳିଧୂଳି ଲାଗୁନି; ମାତ୍ର ଆମ କଥା ତ ତମେ ଥରେ ହେଲେ ଦେଖିନାହଁ । ତମେ କାହୁଁ ଜାଣିବ କ'ଣ ଦୁଃଖ……।"

ନାଥ ଆଉ ଧୈର୍ଯ୍ୟ ଧରି ନ ପାରି ପଚାରିଲା—"ହେଲା, ତୋ କଥା ମାନିଲି । ତୋ ଦିଅଁ କଥା କ'ଣ ହେଲା କହ ?"

"କହୁଚି ପରା ସେଇ କଥା । ସେ ଦିନକୁ ଆମର ଏଗାର ଦିନ ଉପାସ । ସମସ୍ତେ ସେତେବେଳକୁ ଆଖିବୁଜି ଶୋଇଯାଇଥିଲେ କାହାକୁ ପୋଡ଼ା ହେଲା ନାଇଁ । ସମସ୍ତେ ଫିଙ୍ଗା ହେଲେ । ଆହା ମୋର……ଅନ୍ଧର ମାଣିକ ବଇରୀ……।"

ପାଗଲୀ ଟିକିଏ ଥକିଗଲା; ତା'ପରେ ସେହି ସ୍ୱରରେ କହିଲା, "ସେ କି ଏଗାର ଦିନ ଉପାସ ସମ୍ଭାଳନ୍ତା ! ଏଗାର ବରଷର ପିଲା ପରା ! କହ ଦେଖି ବାବୁ, ଛଅମାସ ମୋତେ ପୋଷିଲା, ଆଉ କେତେ ଦିନ ପୋଷନ୍ତା ? ଶେଷକୁ ତା'ର ଗୋଡ଼ହାତ ଫୁଲିଗଲା ।"

ନାଥ କେବଳ ଗପ ଶୁଣିଲା ପରି ଏକଲୟରେ ଶୁଣିଲା । କମଳି ଟିକଏ ରହି, ଟିକଏ କ'ଣ ଗୁଣୁ ଗୁଣୁ ହୋଇ, କେବେ ଆକାଶକୁ ଚାହିଁ, କେବେ ଭୂଇଁରେ ଗାର ପକାଇ କେଉଁ ଅଜଣା ଯୁଗର ଅଶୁଣା କାହାଣୀ କହିବାରେ ଲଗିଲା—

"ସେ ତ ଶେଯରୁ ଉଠିପାରୁ ନ ଥାଏ; ତା ମୁହଁରେ ମୁଁ ତୋରାଣୀ ଟୋପେ ସୁଦ୍ଧା ଦେଇ ପାରିଲି ନାହିଁ । ଆହା ! ଦିନେ ଗାଁରେ ଶୁଣାଗଲା, ଏ ମୋର ଦେବତା ଆମ ଗାଁକୁ ଯିବେ । ଦେବତା ଆସିବେ, ପ୍ରଭୁ ଆସିବେ ବୋଲି ମୁଁ ଚାହିଁ ରହିଲି । ଧନ ମୋର କହିଲା—ମାଆ, ସେ ତ କାହିଁ ଆସିଲେ ନାହିଁ । ଆସିଲେ ସେଇ କେବଳ ତତେ ପୋଷିବେ । ମୁଁ ପାରିଲି ନାହିଁ ।" କହୁ କହୁ କମଳିର ଆଖିରୁ ଅଜସ୍ର ଧାରରେ ସତେ ଅବା ଲୁହଅସରା ବହି-ଗଲା । କନା ଖଣ୍ଡିକରେ ଲୁହ ପୋଛୁ ପୋଛୁ କହିଲା—

"ଧନ ମୋର ଆଖି ବୁଜିବାକୁ ଘଡ଼ିଏ ଅଛି; ତାଙ୍କର ନାଁ ଧରି ସେ ଡାକୁଛି, ସେ ଯାଇ ଆମରି ଦୁଆରେ ପହଞ୍ଚିଗଲେ । ଆହା ! ଦେବତା ସେ···, ଧନକୁ ମୋର କୋଳରେ ଧରି ଲୁହ ଗଡ଼େଇ-ଦେଲେ । ଏ ମୋର ନିଜ ଆଖିରେ ଦେଖିବା କଥା, ମୁଁ କମିତି ପାସୋରି ପାରିବି ବାବୁ ! ତାଙ୍କରି କୋଳରୁ ମୋର କୋଳକୁ ଆଉ ଆସି ନାହିଁ । ଧନ ସେହିଠି ଆଖି ବୁଜିଦେଲା···କେଡ଼େ ଭାଗ୍ୟବନ୍ତ କପାଳ ଧରି ଆସିଥିଲା ସେ···।"

କ୍ଷଣେ ନୀରବ ରହି ପୁଣି ସେ କହିଲା—"ତିନି ବରଷ କଟି-ଗଲା । ତିନି ବରଷ ଭିତରେ ଆଉ ତାଙ୍କର ଦେଖା ମିଳିଲା ନାହିଁ । ତାଙ୍କୁଇ ଦେଖିବାକୁ ଅଇଲି ଏତେ ବାଟ । ଏଠି ସେଠି ଖୋଜି ଆଜି ପାଇଲି ଭେଟ ।

ଏ ସ୍ୱପ୍ନ କି ସତ୍ୟ କିଛି ବୁଝି ନ ପାରି ନାଥ ପଚାରିଲା—"ଆଚ୍ଛା, ପାଗଳି, ତୋ ଦେବତାକୁ ଭଲ ମତେ ଦେଖାଇ ପାରିବୁ ?"

"କାହିଁକି ପାରିବ ନି ? ଆସ, ମୋ ସାଙ୍ଗେ ସାଙ୍ଗେ ଆସ", କହି ସେ ଯିବାକୁ ପ୍ରସ୍ତୁତ ହେଲା । ନାଥ କେତେ କ'ଣ ଆକାଶ ପାତାଳ ଭାବି ତା ପଛେ ପଛେ ବାହାରିଲା । ମନେ ମନେ ବିଚାରିଲା —"ଯା କଥା ଶୁଣି ମୁଁ କ'ଣ ତେବେ ପାଗଳ ହେଲି ।"

ଦଶପାଞ୍ଚଟା ଦୋକାନ, ଦି ଚାରିଟା ମଟର ଗାଡ଼ି, କେତେଖଣ୍ଡ ଚଳନ୍ତା ସାଇକେଲ, କେତେଜଣ ଅଚଳନ୍ତ ପଡିଆଘା, ଗୋଟା କେତେ ଜଗୁଆଳ କନଷ୍ଟବଳ ପାର ହୋଇ ସେ ଦିହେଁ ଆଗକୁ ଆଗକୁ ଚାଲିଲେ । ପାଗଳୀକି ସମସ୍ତେ ବାଟ ଛାଡ଼ିଦେଲେ । ସେ ଏକା ନିଃଶ୍ୱାସକେ ଯାଇ ଏକ ଇଟା ଖମ୍ବ ପାଖେ ଠିଆହୋଇ କହିଲା— "ଦେଖୁଚ ବାବୁ ଯାଙ୍କୁ ? ଏଇ ମୋର ଦେବତା···!"

ନାଥ ଅବାକ୍ ହୋଇ କେବଳ ଚାହିଁ ରହିଲା । ଦେଖିଲା ଆଗରେ ଏକ ଇଟାର ପୀଢ଼ ଉପରେ "ଉତ୍କଳମଣିଙ୍କ" ପ୍ରତିମୂର୍ତ୍ତି !!! କି ଚମତ୍କାର !!! ପାଗଳୀ ପ୍ରତି ଅପୂର୍ବ ସହାନୁଭୂତିରେ ତା ପ୍ରାଣ-ପୂରିଉଠିଲା । ମନେ ମନେ କହିଲା, "ପାଗଳ, ଏଇ ଯେ ତୋର ଦେବତା; ଏ ତ ମୋ ଦେଶର ଦେବତା !!!"

※ ※ ※

ସେହିଦିନୁ ନାଥ ଦେଖିଲା, ପାଗଳୀ ତା ଦୋକାନ ଦୁଆରେ ଆଉ ବେଶି ସମୟ ରହୁ ନାହିଁ । ତାର କନାକବଟା ନେଇ ସେହି ଖମ୍ବମୂଳେ ଆଶ୍ରୟ ନେଇଛି । ବୁଲି ବୁଲି ଫେରି ଆସିଲେ ସେହି ମୂର୍ତ୍ତିକି ଚାହିଁ ତା କୋଳର ସଙ୍ଗୀନ ବଇର କଥା ପଚାରେ, ଆଖିରୁ ଦୁଇଧାର ଲୁହ ବୋହିଯାଏ; ଡାକ ଡାକ କିଏ ନ ଶୁଣିଲେ ଅଭିମାନରେ କହେ –

"ଦେବତା ମୋର ! ତୁମେ କି ପାଷାଣ ହେଲ ? ମୋପରି ତ କେତେ ତୁମର ବାଟ ଚାହିଁ ଗାଁ ଗାଁରେ ପଡ଼ିଛନ୍ତି······ !!!"

———

# ଉପହାର

## ଲେଖକ—ପଦ୍ମଭୂଷଣ କାଳନ୍ଦୀଚରଣ ପାଣିଗ୍ରାହୀ

ଆଜ କୁମାରପୂର୍ଣ୍ଣିମା । ଗୋଧୂଳି ଆକାଶରେ ପକ୍ଷୀଗୁଡ଼ିକ ଦିବସରେ କର୍ମକ୍ଳାନ୍ତ ମେଣ୍ଟାଇବା ଲାଗି ଥରେ ଥରେ ଡାକଦେଇ ନିଜ ନିଜ ବସାକୁ ଉଡ଼ି ଯାଉଅଛନ୍ତି । କୁଆ ସବୁ କା' କା' ଶବ୍ଦରେ ପରସ୍ପରକୁ ଆହ୍ୱାନ କରି ମଧୁପୁର ଗ୍ରାମର ସୀମାସ୍ଥିତ ସୁଦୀର୍ଘ ନାରିକେଳ ବୃକ୍ଷ ଉପରେ ସଭା ଆରମ୍ଭ କରିଦେଲେଣି । ଅସ୍ତଗାମୀ ରବିର କନକ-କିରଣ ଗ୍ରାମର ଗୃହମାନଙ୍କ ଉପରଦେଇ କ୍ରମେ ଆକାଶରେ ମିଶିଗଲାଣି । ମା'ମାନେ ପୁଅମାନଙ୍କୁ ହଳଦୀ ଲଗାଇ-ଦେଇ, ଝିଅମାନଙ୍କ ମୁଣ୍ଡ ବାନ୍ଧିଦେଇ, ସିନ୍ଦୂର, ଅଳତା ଦେଇ ଦାଣ୍ଡରେ ଛାଡ଼ି ଦେଇଅଛନ୍ତି । ଏହି ଗୋଧୂଳି ଆଲୋକରେ ମଳିନ ପ୍ରକାଣ୍ଡ ପୂର୍ଣ୍ଣଚନ୍ଦ୍ର ଗ୍ରାମର ଅନତିଦୂରସ୍ଥ ଆମ୍ବତୋଟାରୁ ଧୀରେ ଧୀରେ ଉଇଁ ଉଠୁଅଛି । ଘରମାନଙ୍କରେ ଆସନ୍ନ-ଯୌବନା କନ୍ୟାମାନଙ୍କର ପୁଚିଖେଳ ଓ "କୁଆଁରି ପୁନିଅଁ ଜହ୍ନ ଗୋ ଫୁଲ ବଉଲବେଣୀ" ଗୀତ ଆରମ୍ଭ ହୋଇଗଲାଣି ।

ଛୋଟ ଛୋଟ ପିଲାଗୁଡ଼ିକ ଆସି ଦାଣ୍ଡରେ ଖେଳିଲେଣି । ଯୁବକ, ପ୍ରୌଢ଼ ଓ ବୃଦ୍ଧମାନେ ପଶା, ତାସ୍‌ର ଧୂମ୍ ଲଗାଇ ଦେଲେଣି । ସୁଲୁ ସୁଲୁ ବାଆ ସମସ୍ତ ପ୍ରକୃତିର ହୃଦୟରେ ଏକ

ନବୀନ ଆନନ୍ଦର ସଞ୍ଚାର କରୁଅଛି । କ୍ରମେ ଚନ୍ଦ୍ରଜ୍ୟୋତ୍ସ୍ନା ଓ ବୃକ୍ଷଚ୍ଛାୟା ତଳେ ପିଲାମାନଙ୍କର ଲୁଚକାଳି ଖେଳ, ସନ୍ନିହିତ ଶ୍ୟାମଳ ଧାନ୍ୟକ୍ଷେତ୍ରର ସୁଗନ୍ଧ ଅତ୍ୟନ୍ତ ପ୍ରାଣସ୍ପର୍ଶୀ । ଶାରଦାକାଶରେ ଖଣ୍ଡେ ଖଣ୍ଡେ ଧଳା ମେଘ ଭାସି ଯାଉଛି, ଚନ୍ଦ୍ର ସେ ସବୁର ଦୂରରେ ରହିବାଲାଗି ସର୍ବଦା ପଛେଇ ପଛେଇ ଚାଲିଛି । ପିଲାଗୁଡ଼ିକଙ୍କ ମୁଖରୁ ଦେଖିଲେ ବୋଧହୁଏ ଯେପରି ସମସ୍ତଙ୍କ ହୃଦୟ ଏହି ପୂର୍ଣ୍ଣଚନ୍ଦ୍ର ପରି ନିବିଡ଼ ଆନନ୍ଦରେ ପରିପୂର୍ଣ୍ଣ । ଦୁଃଖ ଓ ଅଭାବ ଯେପରି କାହାରି ହୃଦୟର ସୀମା ପର୍ଯ୍ୟନ୍ତ ଆସି ନାହିଁ । ସେମାନଙ୍କ ମଧ୍ୟରୁ କିଏ ତୀରବେଗରେ ଇତସ୍ତତଃ ଛୁଟିଯାଉଛି; କିଏ କ୍ଷୁଦ୍ର ନାରିକେଳ ବୃକ୍ଷମାନଙ୍କ ଛାୟାରେ ଲୁଚି ଯାଉଛି; କାହା କାହା ମଧ୍ୟରେ ହସ୍ତାହସ୍ତି ଚାଲିଛି, କିଏ "ଅଦାଚୋର" କରି ଚୋର ଧରା ହୋଇଯାଉଛି, ଇତ୍ୟାଦି ।

ଏହି କ୍ରୀଡ଼ାରତ ବାଳକ ବାଳିକାମାନଙ୍କ ମଧ୍ୟରେ ଦିଓଟି ବାଳକ ସମ୍ପୂର୍ଣ୍ଣ ପୃଥକ୍ ବୋଧ ହେଉଅଛି । ପୋଷାକ ପରିଚ୍ଛଦ ଢଙ୍ଗଢାଙ୍ଗ ସବୁଥିରେ ସେମାନେ ଅନ୍ୟମାନଙ୍କଠାରୁ ଫରକ୍, ଦିଓଟିଯାକ ଦେଖିବାକୁ ବଡ଼ ସୁନ୍ଦର । ଗୋଟିକୁ ସାତ ଆଠ ବର୍ଷ ଏବଂ ଅପରଟିକୁ ଚାରିପାଞ୍ଚ ବର୍ଷ ହେବ । ବଡ଼ଟି ବଡ଼ ଚଞ୍ଚଳ, ଭାରି ଖୁଜବୁଜିଆ । ସବୁ ଖେଳରେ ଜିତାପଟ ତା'ରି । ଅବୟବଗୁଡ଼ିକ ବେଶ୍ ହୃଷ୍ଟପୁଷ୍ଟ ଏବଂ ସବଳ । ଦିନମାନ ଅବିଶ୍ରାନ୍ତ କ୍ରୀଡ଼ାରେ ତାହାର କ୍ଲାନ୍ତି ନାହିଁ, ଆଳସ୍ୟ ନାହିଁ, ସର୍ବଦା ଆନନ୍ଦିତ । ନାମଟି ମଧ୍ୟ ତାର ଯଥାର୍ଥରେ ପ୍ରଫୁଲ୍ଲ ରଖା ଯାଇଅଛି । ସାନଟି କୃମିଗ୍ରସ୍ତ; ସୁତରାଂ ଟିକିଏ ଦୁର୍ବଳ, ଖେଳ ଦଉଡ଼ଧାପଡ଼ା ସେ କରିପାରେ ନାହିଁ—ପ୍ରଫୁଲ୍ଲ ପରି ଖେଳି ବୁଲିବାକୁ ସେ ନିଜକୁ ଅସମର୍ଥ ଦେଖି ବଡ଼ ଦୁଃଖିତ ହୁଏ, ତଥାପି ସେ ପ୍ରଫୁଲ୍ଲ

ସାଙ୍ଗ ଛାଡ଼ି କ୍ଷଣେ କେଉଁଠାରେ ରହିପାରେ ନାହିଁ । ପ୍ରଫୁଲ୍ଲ ମଧ୍ୟ ବସନ୍ତକୁ ସାଙ୍ଗରେ ନେଇ ଖେଳି ଯିବାକୁ ଭଲ ପାଏ । ଗୋଟିଏ ଜାଗାରେ ତାକୁ ବସାଇଁ ଦେଇ କହେ, "ଏଇଠି ବସିଥା, ମୁଁ କେମିତି ଖେଳୁଛି ଦେଖ !" ବସନ୍ତ ସେହିଠାରେ ବସିରହି ପ୍ରଫୁଲ୍ଲ ଉପରେ ନଜର ରଖିଥାଏ । ପ୍ରଫୁଲ୍ଲର ଦଉଡ଼ ଦେଖି, ସେ କେବେ କେବେ ଉତ୍ସାହିତ ହୋଇ ଠିଆ ହୋଇ-ପଡ଼େ । ପ୍ରଫୁଲ୍ଲ ବସନ୍ତଠାରୁ ବାହାଦୁରୀ ନେବାଲାଗି ଅନେକ ସମୟରେ ତାହାର ସମ୍ମୁଖରେ ଛୁଟିଯାଏ, ବସନ୍ତ ମହାଆନନ୍ଦରେ 'ପଫୁଲ୍' 'ପଫୁଲ୍' ଡାକ ଛାଡ଼େ । ପ୍ରଫୁଲ୍ଲର ଖୁବ ଇଚ୍ଛା ବସନ୍ତ ଟିକଏ ଜପର ତାହାର ପରି ଖେଳନ୍ତା, ତାହାହେଲେ ତାର ଆହୁରି କେତେ ଆନନ୍ଦ ହୁଅନ୍ତା । ବାପା ଏବଂ ବୂଢ଼ୀ ଧାଈର ସବୁ ତାଗଦ୍‌ସତ୍ତ୍ୱେ ସମସ୍ତ ଭୁଲିଯାଇ ସେ ଅନେକ ସମୟରେ ବସନ୍ତକୁ ପ୍ରବର୍ତ୍ତାଏ—ଟିକଏ ଖେଳିଲେ ସେ କେତେ ସୁଖ ପା'ନ୍ତା । ବସନ୍ତଟାର ବଚ୍ଚର ବୁଢ଼ାଙ୍କ ପରି, ସେ ଧାଈର କ୍ରୋଧଚକ୍ଷୁ ଏବଂ ବାପାଙ୍କ ମନା ଭୁଲି ପାରେ ନାହିଁ । ଉତ୍ତର କରେ, "ନାଇଁ ନାଇଁ ପଫୁଲ୍ଲ, ଗୋଡ଼ ଭାଙ୍ଗିଗଲେ ବାପା ଗାଳିଦେବେ ।" ପ୍ରଫୁଲ୍ଲର ବାପାଙ୍କ ତାଗିଦ୍ ମନେ ପଡ଼ିଯାଏ । ସେ ଟିକଏ ମୁହଁକୁ ଶୁଖାଇ ପରକ୍ଷଣରେ ସଙ୍ଗୀମାନଙ୍କୁ ଗହିଁ ଆନନ୍ଦରେ ଡେଇଁ ଡେଇଁ ଖେଳିବାକୁ ଚାଲିଯାଏ । ବସନ୍ତର ପ୍ରକୃତି ଏପରି ହେବାର କାରଣ, ସେ ଚିରରୁଗ୍ଣ—କ୍ରିମିଗ୍ରସ୍ତ ।

ମଧୁସୂଦନ ବାବୁ କଟକରେ ଜଣେ ଭଲ ଓକିଲ, ଅଳ୍ପ ବୟସରେ ତାଙ୍କର ବ୍ୟବସାୟର ପ୍ରସାର ବେଶ୍ ବୋଲି ଲୋକ-ମୁଖରୁ ଶୁଣାଯାଏ । ତାଙ୍କର ସ୍ତ୍ରୀ ଏହି ଅଳ୍ପ ବୟସରେ ତାଙ୍କ ନିକଟରେ ଦୁଇଟି ଶିଶୁ ଛାଡ଼ିଦେଇ ଇହଧାମ ପରିତ୍ୟାଗ କଲେ ।

ବନ୍ଧୁମାନେ ଯେତେ ଅନୁରୋଧ କଲେହେଁ ମଧୁସୂଦନ ବାବୁ ଏହି ଭଗ୍ନ-ସଂସାରକୁ ମରାମତ କରିବାକୁ ରାଜି ହେଲେ ନାହିଁ । ସେ ତାଙ୍କ ସ୍ତ୍ରୀଙ୍କର ପ୍ରତିଶ୍ରୁତି ପରି ଏହି ଶିଶୁ ଦୁଇଟିଙ୍କୁ ଦେଖି ସେମାନଙ୍କଠାରେ ଅନ୍ତରର ସମସ୍ତ ସ୍ନେହ ଆଦର ଢାଳି ଦେଇଥିଲେ । କେତେକ ବର୍ଷ ପରେ ଏଥର ଦଶହରା ଛୁଟିରେ ପିଲାମାନଙ୍କୁ ନେଇ ଘରକୁ ଆସିଅଛନ୍ତି ।

ପୁଅ ଦୁହିଙ୍କ ମଧ୍ୟରେ ପ୍ରଫୁଲ୍ଲ ବଡ଼ ଅଝଟ—ଯେଉଁ କଥାରେ ଲାଗିଥିବ, ତାହା ନ ପାଇଲେ ନ ଛାଡ଼େ, କନିଷ୍ଠ ବସନ୍ତକୁ ସବୁବେଳେ ସାଙ୍ଗରେ ନେଇ ବୁଲୁଥାଏ । ବାଲିଖେଳ ଖେଳୁଥିବା ବେଳେ ଦୁହେଁ ବସି କେତେ ପ୍ରକାର ଗୀତ ବୋଲି ଯାଉଥିବେ । ସେଥିମଧ୍ୟରୁ କାହାର ଅର୍ଥ ଅଛି, କାହାର ବା ନାହିଁ; କିନ୍ତୁ ତାହା ପ୍ରତି ଦୁହିଁଙ୍କର ଲକ୍ଷ୍ୟ ନ ଥାଏ । ଗ୍ରାମକୁ ଆସିଲେ ପ୍ରଫୁଲ୍ଲ ବସନ୍ତକୁ ନେଇ ଯେତେଥର ଆଖୁ ଦୋରୁଅ ଖାଇଛି ସେତେଥର ତାର କ୍ରିମି ପ୍ରବଳ ହୋଇଛି ଏବଂ ଶେଯରେ ତାକୁ ବନ୍ଦ ରହିବାକୁ ପଡ଼ିଛି । ପିତାଙ୍କର ସବୁବେଳେ ଭୟ, ପ୍ରଫୁଲ୍ଲ ବସନ୍ତକୁ ନେଇ କିଛି ଗୋଟାଏ ଅନର୍ଥ ଘଟାଇବ; କିନ୍ତୁ ସେ ଦୁହିଁଙ୍କର ପ୍ରଫୁଲ୍ଲ ବଦନକୁ ମଳିନ ଦେଖିବାକୁ ତାଙ୍କୁ ବଡ଼ କାଟେ । ସେଥିଲାଗି ବେଶି କିଛି ଆକଟ କରନ୍ତି ନାହିଁ; ମାତ୍ର ବୁଢ଼ୀ ଧାଈ ସହଜରେ ଛାଡ଼େ ନାହିଁ । ସେ ଜାଣେ, ବସନ୍ତ ଅତି ନିରୀହ, ଯେତେ ଯାହା ଦୁଷ୍ଟପଣ ସବୁ ପ୍ରଫୁଲ୍ଲର । ପ୍ରଫୁଲ୍ଲ ଥରେ ବସନ୍ତକୁ ନେଇ ବୁଲିବାକୁ ଯାଇଥିଲା । ବର୍ଷା ହେବାରୁ ତିନ୍ତି ତିନ୍ତି ଦୁଇଭାଇ ଘରକୁ ଫେରି ଆସିଲେ; କିନ୍ତୁ ବସନ୍ତ ଜ୍ୱରରେ ଶୋଇଲା । ଅଥଚ ପିତା କିଛି କହିଲେ ନାହିଁ, କେବଳ "ମା ନାହିଁ, କାନ୍ଦିଲେ ଏହାକୁ କିଏ ବୁଝାଇବ," ଏତିକି ଭାବି ସେ ସବୁ କ୍ରୋଧରୁ କ୍ଷାନ୍ତ ହୁଅନ୍ତି ।

ଏହିପରି କେତେ ଘଟଣା ଘଟି ଯାଇଅଛି । ପ୍ରତିଥର "ଆଉ ଏପରି କରିବୁ ନାହିଁ" ଏତିକ ମାତ୍ର କହି ତାକୁ ବାରଣ କରନ୍ତି; କିନ୍ତୁ ପ୍ରଫୁଲ୍ଲର ଗୋଟାଏ ସୁଗୁଣ କିମ୍ବା ଦୁର୍ଗୁଣ ଯେ, ସେ ସବୁ ଆକଟ ପାଣିରେ ଗାରଦେଲାପରି ମୁହୂର୍ତ୍ତରେ ଭୁଲିଯାଏ । ଅଥଚ ଆଶ୍ଚର୍ଯ୍ୟର ବିଷୟ, ଯେଉଁ ପାଠ ଅନ୍ୟ ପିଲାମାନେ ପାଞ୍ଚଘଣ୍ଟାରେ ଆୟତ୍ତ କରନ୍ତି, ସେ ପାଞ୍ଚମିନିଟରେ ତାହା କରିପାରେ । ବୁଦ୍ଧିବୃତ୍ତି ତାର ବଡ଼ ପ୍ରଖର, ପ୍ରଶ୍ନ କରିବାରେ ଓ ଆଳାପ କରିବାରେ ସେ ବଡ଼ ପଟୁ ଗୋଟିଏ ଗୋଟିଏ ପ୍ରଶ୍ନ ସେ ଏପରି ପଚାରିଥାଏ ଯେ ଲୋକର ଉତ୍ତର ଦେଇ ବୁଝାଇବା କଷ୍ଟସାଧ୍ୟ । "ଘଣ୍ଟା କାହିଁକି ନଅଟା ବାଜିଲା; ଗୋରୁ କାହିଁକି କଥା କହେ ନାହିଁ" ଇତ୍ୟାଦି ଇତ୍ୟାଦି ।

ବାପା ତା' ନିକଟରେ ଗୋଟିଏ ବଡ଼ କୌତୁକର ସାମଗ୍ରୀ । ଜାମାଯୋଡ଼ା ପିନ୍ଧି ଆଉ କିଛି କାମ ନ କରି ଖାଲି ପରଲୋକଙ୍କ କଜିଆକୁ ଗଣ୍ଠି କରି କାହିଁକି ସେ କଚେରୀକୁ ଯାଆନ୍ତି ? ଖେଳିଲେ ଦଉଡ଼ିଲେ ତାଙ୍କର କେତେ ଆନନ୍ଦ ହୁଅନ୍ତା ! ତେବେ ବସନ୍ତ ପରି ସେ କ'ଣ ବୋଗା ଓ ନିରୀହ ? ବସନ୍ତ ପରି ବାପାଙ୍କୁ ନିର୍ବୋଧ ମନେକରି ସେ ତାଙ୍କୁ କେତେ ଥଟ୍ଟାତାମସା କରେ, କେତେ ଟେଳି କୌତୁକ କରେ । ମଧୁବାବୁ ପୁତ୍ରର ସେ ଅଧିକାର ଅକ୍ଷୁର୍ଣ୍ଣ ରଖି ତାକୁ "ଜେଜେବାପା" ବୋଲି ଡାକନ୍ତି । ସେଦିନ ପ୍ରଫୁଲ୍ଲ ପିତାଙ୍କ ସାଙ୍ଗରେ ଧାନୁବାବୁଙ୍କ ବାହାଘର ଦେଖି ଯାଇଥିଲା । ଘରକୁ ଫେରି ଆସି ବାପାଙ୍କୁ କହିଲା, "ବାପା, ତୁମେ କାହିଁକି ବାହା ହେଉ ନାହଁ ? କେତେ ବାଇଦ ବାଜନ୍ତା, କମିତି ସୁନ୍ଦର ବେଶ ପିନ୍ଧି ପାଲିଙ୍କିରେ ବସନ୍ତ !" ବାପା ଆଉ କିଛି ଉତ୍ତର ନ ପାଇ କହିଲେ "ତାଙ୍କର ସିନା ବାପା, ମା, ଭାଇ ସବୁ ଅଛନ୍ତି ଯେ ତାଙ୍କୁ ବାହା କରା-ଇଲେ, ମୋର କିଏ ଅଛି ଯେ ମୋତେ ବାହା କରାଇବ ?" ପ୍ରଫୁଲ୍ଲ

ମନରେ ବାସ୍ତବିକ୍ ବଡ଼ଦୁଃଖ ହେଲା । ସତ କଥା—ବାପାଙ୍କର ତ ମୁରବୀ କେହି ନାହାଁନ୍ତି । ସେ କିଛିକ୍ଷଣ ପରେ ଉତ୍ତର କଲା, "କାହିଁକି ବାପା, ମୁଁ ତୁମକୁ ବଡ଼ କରାଇଲେ ହେବ ନାହିଁ ?" ପିତା ଅଳ୍ପ ହସି ଉତ୍ତର କଲେ, "ହଁ ତୁମେ ତ ମୋର ଜେଜେ, କାହିଁକି ହେବ ନାହିଁ ?"

ଏ କଥାଟାକୁ ପ୍ରଫୁଲ୍ଲ ସହଜରେ ଭୁଲି ପାରିଲା ନାହିଁ । ରାତିରେ ନିଦରେ ଦେଖିଲା, ବପାଙ୍କର ଜନ୍ମଦିନ—କେତେ ବାଦ୍ୟ ନିଶାଣ, କେତେ ଉତ୍ସାହ, କେତେ ଆୟୋଜନ । ପରଦିନ ସକାଳେ ଉଠି ବାହାରିଲା ବାପାଙ୍କ ଜନ୍ମଦିନ ପାଇଁ ନିଜେ କ'ଣ ଉପହାର ଦେବ, ଆଗ ତାହା କିଣିବାକୁ । ତା'ର ଇଚ୍ଛା, ଯେଉଁ ଜିନିଷ କେବେ କେହି ଦେଖିନାହାଁନ୍ତି ସେହିପରି ଗୋଟିଏ କିଣି ଆଣି ଦେବ । ବାପାଙ୍କୁ ସାଙ୍ଗରେ ନେଇଥାଏ । ମୁରବୀ ଢଙ୍ଗରେ ଏ ଦୋକାନ, ସେ ଦୋକାନ ଖୋଜି ଖୋଜି ଯାଉଥାଏ । ଦୋକାନୀଗୁଡ଼ାକ ଅବାକାବା ହୋଇ ମଧୁବାବୁଙ୍କ ମୁହଁକୁ ଚାହୁଁଥାନ୍ତି । ଖୋଜି ଖୋଜି ଗୋଟିଏ ଦୋକାନରୁ କର୍ପୂର-ମାଳାଟିଏ ବାପାଙ୍କୁ ନ ଦେଖାଇ କିଣିଲା । ଦୋକାନୀ ପଇସା ମାଗିବାରୁ ବାପାଙ୍କୁ ଅବାକ୍ ହୋଇ ଚାହିଁଲା—ପଇସା ପୁଣି ଦୋକାନୀର ଦରକାର କ'ଣ ? ପିତା ହସି ହସି "ଆଚ୍ଛା, ଆଚ୍ଛା, ପଇସା କଥା ପରେ ଦେଖାଯିବ" କହି ଘରକୁ ଫେରିଲେ । ବାଟରେ ଆସିବା ସମୟରେ ପ୍ରଫୁଲ୍ଲ ବାରମ୍ବାର ପଚାରୁଥାଏ; "ବାପା, ସତ କହ, ମୁଁ ଯାହା କିଣିଛି ତୁମେ ତ ତାହା ଦେଖି ନାହଁ ?" ତାର ଇଚ୍ଛା, ପିତାଙ୍କୁ ଉପହାର ଦେଇ ହଠାତ୍ ବିସ୍ମିତ କରିଦେବ । ଘରକୁ ଆସି ମାଳାଟିକୁ ବାକ୍ସରେ ବନ୍ଦ କରି ରଖିବାକୁ ଯାଉଛି; ବୁଢ଼ୀ ଧାଈଟା କପରି ଦେଖି ପାରି କାହିଁକି

ଆଣିଛନ୍ତି ବୋଲି ପଚାରିଲା । ବୁଢ଼ୀକୁ ତାର ଯେତେ ଅବିଶ୍ୱାସ, ସଂସାରରେ ଆଉ କାହାରିକୁ ତେତେ ନୁହେ । କାଲେ ଆଗ ଯାଇ ସେ ବାପାଙ୍କୁ କହିଦେବ, ଏହି ଭୟରେ ସେ ମାଳାଟି ନେଇ ପିତାଙ୍କ ନିକଟକୁ ଦୌଡ଼ିଗଲା । ସେତେବେଳକୁ ସେ ପୂଜାରେ ବସି ଅଛନ୍ତି, ନିର୍ବିଘ୍ନରେ ଯାଇ ମାଳା ତାଙ୍କ ଗଳାରେ ଲମ୍ବାଇ ଦେଲା ଏବଂ କହିଲା, "ବାପା, ଏହାକୁ ରଖିଥାଅ, ବିଭାଦିନ ପୁଣି ପିନ୍ଧିବ ।" ପିତା ଆଦରରେ ସମ୍ମତି ସଙ୍କେତ ଦେଲେ । ତତ୍ପରେ ସେ ପିତାଙ୍କର ଏ ପାଖ ସେ ପାଖ ବୁଲି ମାଳାଟି କପରି ତାଙ୍କୁ ମାନୁଛି ଆଗ୍ରହ ଦୃଷ୍ଟିରେ ଦେଖିବାକୁ ଲଗିଲା । ଏହିପରି ତା'ର ପ୍ରତିଦିନର ଆନନ୍ଦଚହଲରେ ମଧୁବାବୁ ସ୍ତ୍ରୀ-ବିୟୋଗ ଦୁଃଖ ଅନେକ ପରିମାଣରେ ଭୁଲିଯାନ୍ତି ।

ଆଜି କୁମାରପୂର୍ଣ୍ଣିମା, ସଞ୍ଜରେ ଗ୍ରାମଯାକ ଆନନ୍ଦଉତ୍ସାହରେ ଭାସୁଛି । ପ୍ରଫୁଲ୍ଲ ବସନ୍ତକୁ ସଙ୍ଗରେ ନେଇ ଗୋଟିଏ ଚଉପାଢ଼ୀ ଉପରେ ବସାଇ ଦେଇ ପିଲାମାନଙ୍କ ସଙ୍ଗେ ଖେଳିବାରେ ମାତିଛି । ଖେଳି ସାରି ଡେଇଁ ଡେଇଁ ଘରକୁ ଫେରି ଆସୁଛି, ବସନ୍ତ କଥା ମନେ ନାହିଁ । ବସନ୍ତ 'ପଫୁଲ୍ଲି' 'ପଫୁଲ୍ଲି' ଡାକି ପଛେ ପଛେ ଆସୁ ଆସୁ ବାଟରେ ଚିତ୍କାର କରି ପଡ଼ିଗଲା । ପ୍ରଫୁଲ୍ଲ ଚମକି ପଡି ପଛକୁ ଚାହିଁ ଦେଖିଲା । ଅନ୍ୟ ପିଲାଙ୍କ ପରି ତାର ଧୈର୍ଯ୍ୟଚ୍ୟୁତି ହେବାର ନୁହେଁ—ସଙ୍ଗେ ସଙ୍ଗେ ଦଉଡ଼ି ଯାଇ ବସନ୍ତକୁ ଉଠାଇ ତା ଦେହରୁ ଧୂଳି ଝାଡ଼ି ଦେଉଥାଏ । ଏହି ସମୟରେ ବୁଢ଼ୀ ଧାଇଁ ପହଞ୍ଚିଗଲା, ବସନ୍ତକୁ କୋଳରେ ଧରି ପ୍ରଫୁଲ୍ଲକୁ କଟମଟ ଚାହିଁ ଘର ଭିତରକୁ ଗଲା । ପ୍ରଫୁଲ୍ଲ କିଛିକ୍ଷଣ ସେହିଠାରେ ଠିଆ ହୋଇ ପୁଣି ଖେଳିବାକୁ ଚାଲିଗଲା ।

ପିତା ଗୃହକୁ ଆସି ଏ ଘଟଣା ଦେଖି ଅବାକ୍ ହେଲେ । ପ୍ରଫୁଲ୍ଲକୁ ଶାସନ କରିବା ନିତାନ୍ତ ଆବଶ୍ୟକ ମନେ କଲେ । ଏହି ସମୟରେ ଖେଳ ସାରି ପ୍ରଫୁଲ୍ଲ ଆସି ପହଞ୍ଚିଲା । ବସନ୍ତକୁ ନ ଦେଖି ତାର ପଡ଼ିଯାଇଥିବା କଥା ମନେ ପଡ଼ିଲା । ଦେଖିଲା, ବସନ୍ତ ଯେଉଁ ଘରେ ଶୋଇଥିଲା, ସେ ଘର ଭିତରୁ କବାଟ ବନ୍ଦ ହୋଇଛି । ଜଳାବାଟେ ଚାହିଁଲା—ବସନ୍ତ ଆଖି ବୁଜି ଶୋଇଛି ଏବଂ ବୁଢ଼ୀ ଧାଈ ତା' ପାଖରେ ବସିଛି । ବଡପାଟି କରି ସେ ଦୁଇ ଚାରି ଡାକ ଡାକିଲା, ବୁଢ଼ୀ ଶୁଣିଲା ନାହିଁ । ତା'ପରେ କବାଟକୁ ଆସି ସଜୋରରେ ଧଡ଼୍ ଧଡ଼୍ କରିବାକୁ ଲାଗିଲା । ବସନ୍ତର ନିଦ ଭାଙ୍ଗିଯାଇପାରେ, ଏହି ଭୟରେ ବୁଢ଼ୀ କବାଟ ପାଖକୁ ଆସି ରାଗରେ କହିଲା, "ତୁ ଏପରି କଲେ ବାପା ଆଗରେ କହି-ଦେବି । ତତେ ଆମେ ଏତେ ଥର ମନା କଲୁଁ, ତେବେ ବି ତୁ ବସନ୍ତକୁ ଏଣେ ତେଣେ ବୁଲାଇ ରୋଗରେ ପକାଉଛୁ । ତୋ ଉପରେ ବାପା ଓ ଅନ୍ୟ ସମସ୍ତେ ବିରକ୍ତ ହେଉଛନ୍ତି ।" ଏତିକି କହି ସେ ପୂର୍ବବତ୍ କବାଟ ବନ୍ଦ କରି ବସନ୍ତ ପାଖରେ ଯାଇ ବସିଲା ପ୍ରଫୁଲ୍ଲ ନିର୍ବାକ ହୋଇ ଦ୍ୱାରରେ ଠିଆ ହୋଇଥାଏ । 'ସମସ୍ତେ ତା ଉପରେ ବିରକ୍ତ', ଏ କଥାଟା ସେ ଠିକଏ ହେଲେ ବୁଝି ପାରିଲା ନାହିଁ; କିନ୍ତୁ ତା ମନରେ ଗୋଟାଏ ବଡ଼ ସନ୍ଦେହ ଜାତ ହେଲା—ଧାଈ କହିଲା, 'ବାପା ଆଗରେ କହିଦେବେ ।' ବାପା ଆଗରେ କହିଦେଲେ କ'ଣ ହେବ ? ଏହା ପରୀକ୍ଷା କରିବା ଆଶାରେ ସେ ଆଉ ଦୁଇ ଚାରି ଥର କବାଟରେ ପିଟିଲା । ବୁଢ଼ୀ ରାଗରେ ଗରଗର ହୋଇ ସଙ୍ଗେ ସଙ୍ଗେ ମଧୁବାବୁଙ୍କୁ କହିଦେଲା । ପ୍ରଫୁଲ୍ଲ ବୁଢ଼ୀ ପଛେ ପଛେ ଗୋଡ଼ାଇ ଯାଇଥାଏ । ବୁଢ଼ୀର କଥା ଶେଷ ନ ହେଉଣୁ ସେ ଆଗ ତାଙ୍କ କୋଳରେ ବସିବାକୁ ଗଲା ।

ଇଚ୍ଛା, ବୁଢ଼ୀ ନାମରେ ନାଲିଶ ଦାଏର କରିବ । ପିତା ରାଗରେ କହିଲେ, "ତୁ ମୋ ପାଖକୁ ନ ଆସି ସିଆଡ଼େ ଥା; ତୋ ପରି ଦୁଷ୍ଟ ପିଲାର ମୁହଁ ଗୃହିଁ କରି ନାହିଁ ।"

ପ୍ରଫୁଲ୍ଲ ଥକ୍କା ହୋଇ ଠିଆ ହୋଇଗଲା ; ପିତା କହିବାକୁ ଲାଗିଲେ, "ତତେ କେତେଥର ମନା କରିଛି, ତୁ ବସନ୍ତକୁ ସାଙ୍ଗରେ ନେବୁ ନାହିଁ, ତୁ ଗୋଟାଏ ଜିଦ୍‌ଖୋର ହୋଇ ବରାବର ତାକୁ ଲୋଗରେ ପକାଉଛୁ !" ସେ ଆସିଥିଲା ବୁଢ଼ୀ ଧାଈ ତାକୁ ଅପମାନ ଦେଇଛି, ବାପାଙ୍କୁ କହି ତାର ପ୍ରତିକାର କରିବା ଲାଗି । ତାର ଦୁଇ ଆୟତ ଚକ୍ଷୁ ଜଳରେ ପୂର୍ଣ୍ଣ ହୋଇ ଆସିଲା । ପଛକୁ ମୁହଁ ବୁଲାଇ ଦେଇ କଇଁ କଇଁ ହୋଇ ଧୀରେ ଧୀରେ ବାହାରିଲା । ପିତାଙ୍କର. ମନେ ପଡ଼ିଲା; ଏ ଥରେ ଅବୁଝା ହେଲେ ଏହାକୁ ବୁଝାଇବାକୁ ଆଉ କେହି ନାହିଁ । ଆସନରୁ ଉଠି ଯାଇ ତାକୁ କୋଡ଼କୁ ନେଇ ଆସିଲେ ଏବଂ ପିଠି ଆଉଁଷି ଦେଇ ବୁଝାଇଲେ, "ତୁ କ'ଣ ବୁଝି ପାରୁ ନାହୁଁ ବାପା, ତୋରି ହେଲାରୁ ବସନ୍ତ କେତେ କଷ୍ଟ ପାଇଲା ? ତୁ ମୋ ଆଗରେ ସତ କରି କହିଲୁ, ଆଉ ତ କେବେ ଏପରି କରିବୁ ନାହିଁ ?" ପ୍ରଫୁଲ୍ଲ କାନ୍ଦ କାନ୍ଦ ହୋଇ କହିଲା, "ମୋ ମନେ ତ କଣ୍ଠି ରହୁ ନାହିଁ । ମନେ ଥିବାଯାଏ ତାକୁ ଏକୁଟିଆ ଛାଡ଼ିବ ନାହିଁ ।" ପିତା ଶାସନ ଛଳରେ କହିଲେ, "ତୁ ଯେବେ ମନେ ନ ରଖିବୁ ତେବେ ବେଶୀ ବିରକ୍ତ ହେବ ।"

ଦୁଆରେ ଗଙ୍ଗଶିଉଳୀ ଫୁଲ ଗଛରେ ଫୁଟିଛି, ତଳେ ମଧ୍ୟ କେତେ-ଗୁଡ଼ାଏ ଫୁଲ ପଡ଼ିଛି । ପିତା ଫୁଲ ଗୋଟାଇ ଖେଳିବାକୁ ପ୍ରଫୁଲ୍ଲକୁ ଛାଡ଼ିଦେଲେ । ସେ ଖୁସି ହୋଇ ଯାଇ କିଛି ସମୟ ଖେଳିଲା ଏବଂ ପରକ୍ଷଣରେ ସବୁ କଥା ପାସୋରି ଗଲା—ଶୀତର ପ୍ରକୃତି

ଯେପରି ଗ୍ରୀଷ୍ମକୁ ଭୁଲିଯାଏ ଏବଂ ରାତ୍ରି ଯେପରି ଦିବସକୁ ଭୁଲିଯାଏ । ଫୁଲ ଗୋଟାଇ ସାରି ଆଉଥରେ ବସନ୍ତ ଶୋଇଥିବା ଘରର କବାଟ ଫାଙ୍କ ବାଟେ ଭିତରକୁ ଚାହିଁ ଦେଖିଲା, କ୍ଷୀଣ ଆଲୋକରେ ବସନ୍ତ ଶୋଇଥିବାର ଦେଖାଯାଉଛି ଏବଂ ବୁଢ଼ୀ ଧାଈ ପୂର୍ବପରି ବସିଛି । ଆଉଥରେ ଡାକଲେ ବୁଢ଼ୀ ରାଗ କରିବ ଭାବି ନିରାଶ ହୃଦୟରେ ଶୋଇବା ଘରକୁ ଗଲା ଏବଂ ଏକାକି ହୋଇ ବିଛଣା ଉପରେ ପଡ଼ିଗଲା । ଏହି ଘରେ ସେ କେତେ ରାତି ବୋଉ କୋଳରେ ଶୋଇଛି, କେତେ ଗୀତ ବୋଉଠାରୁ ଶୁଣିଛି, ବର୍ଷା ଘଡ଼ଘଡ଼ି ଶୁଣି ସେ ବୋଉକୁ କେତେଥର ଜାକି ଧରିଛି ଏବଂ ବୋଉ ତାର ପିଠି ଥାପୁଡ଼ାଇ ତାକୁ ଶୁଆଇଛି । ସବୁ କଥା ଗୋଟି ଗୋଟି ହୋଇ ତାର ମନେ ପଡ଼ିଲା । ସେ କାନ୍ଦି କାନ୍ଦି କହିଲା "ବୋଉ, ମୋ ଉପରେ ସମସ୍ତେ ବିରକ୍ତ ହେଉଛନ୍ତି, ତୁ ଯେଉଁଠାରେ ଅଛୁ ମତେ ସେଠାକୁ ନେଇ ଯା ।" ଭାବୁ ଭାବୁ ତାର ନିଦ୍ରା ଆସିଲା ।

କଚେରି ଖୋଲିବା ସମୟ ହୋଇଗଲାଣି । ମଧୁବାବୁଙ୍କର ପିଲା ଦୁହିଁଙ୍କୁ ନେଇ କଟକ ଯାତ୍ରା କରିବାର କଥା; କିନ୍ତୁ ସେମାନଙ୍କର ମାମୁଁ ବଡ ଜିଦ୍ ଧରିଲେ ପିଲା ଦୁହିଁଙ୍କୁ ବାର ତେର ଦିନ ପାଇଁ ରଖିବାକୁ । କାରଣ, ଏ ସମୟରେ ତାଙ୍କ ପୁଅର ବିଭାଘର । ମଧୁବାବୁ ପ୍ରଥମେ ବଡ଼ ଅନିଚ୍ଛା ପ୍ରକାଶ କରିଥିଲେ; କିନ୍ତୁ ଶ୍ୟାଳକଙ୍କର ବହୁ ଅନୁରୋଧରେ ଶେଷରେ ସମ୍ମତି ଦେଲେ । ପ୍ରଫୁଲ୍ଲକୁ ସବୁବେଳେ ଆଖି ଉପରେ ରଖିବାକୁ ବୁଢ଼ୀ ଧାଈକୁ ତାଗିଦ୍ କରିଗଲେ ଏବଂ ବାର ତେର ଦିନ ପରେ ସେ ନିଜେ ଆସି ବିବାହରେ ଯୋଗ ଦେଇ ସେମାନଙ୍କୁ ନେଇଯିବେ ବୋଲି ସ୍ଥିର କରିଗଲେ ।

ମାମୁଁ ଘରର ବିବାହ ଆଉ ଦୁଇ ଚାରି ଦିନ ଅଛି । ସମସ୍ତେ ବିବାହ ଆୟୋଜନରେ ବ୍ୟସ୍ତ । ବୁଢ଼ୀ ଧାଈଙ୍କ ମଧ୍ୟ ବେଳେବେଳେ ଅମୁକଟା ବାଟି ଦେବାକୁ କିମ୍ବା ଅମୁକଟା କାଟି ଦେବାକୁ ପଡ଼ୁଛି । ଅନେକ ଦିନ ପରେ ପ୍ରଫୁଲ୍ଲକୁ ଆଜି ସୁଯୋଗ ମିଳିଛି ବସନ୍ତକୁ ସଙ୍ଗରେ ନେଇ ଖେଳିଯିବାକୁ । ସେହି ପଡ଼ିବା ଦିନୁଁ ବୁଢ଼ୀଟା ଘାଇକି ତା'ର ଦିନେ ହେଲେ ତା' ସଙ୍ଗରେ ଗୁଡ଼ିଦେଇନି ନାହିଁ ଟିକିଏ ଖେଳିବାକୁ । ଆଜି ସେ ସବୁଦିନର ପ୍ରତିଶୋଧ ନେବ । କେଉଁଠାରେ ଖେଳିବାକୁ ହେବ ? ସେ ଅନେକ ଦିନୁଁ ଗୋଟାଏ ଜାଗା ଠିକ୍ କରିଛି—ମାମୁଁଘରର ବାଡ଼ି ନିକଟରେ ଗୋଟାଏ ମସ୍ତ-ବଡ଼ ବରଗଛ, କେତେ ଓହଳ ଦୋଳି ପରି ତଳଯାକେ ଲେଟିଛି । ସେ ବସନ୍ତକୁ ସବୁ କଥା କହି ଫୁସୁଲାଇଲା । ଆଗ ସେ ନିଜେ ଯାଇଁ ମାମୁଁଘର ବାଡ଼ିରେ ଲୁଚିଥିବ, ତା' ପଛରେ ବସନ୍ତ ଲୁନହୋଇ ଗଲେ, ସେଠାରେ ଦୁହିଁଙ୍କର ଭେଟ ହେବ ଏବଂ ସେଠାରୁ ଦୁଇ ଜଣ ସାଥି ହୋଇ ଯିବେ । ତା' ହେଲେ ଦୁଇଜଣ ଏକ ସାଙ୍ଗରେ ଯାଇଛନ୍ତି ବୋଲି ମାମୁଁ ଘରର କେହି ଜାଣି ପାରିବେ ନାହିଁ ।

ଏହି ସ୍ଥିର କରି ପ୍ରଫୁଲ୍ଲ ଆଗ ଯାଇ ମାମୁଘରର ବାଡ଼ିରେ ଲୁଚିଥାଏ । ବସନ୍ତକୁ ସାବଧାନ କରିଦେଇଥାଏ, ସେ ଯେପରି ଲୁନ ହୋଇ ତା ପଛରେ ଯାଏ । ବସନ୍ତଟା ନିହାତି ଓଲୁ । ଘାଇ ପଛେ ପଛେ ଠୁକୁ ଠୁକୁ ହୋଇ 'ପଫୁଲ୍ଲି' 'ପଫୁଲ୍ଲି' ଡାକି ଧାଇଁଲା । ବିରକ୍ତିରେ ଓ ଭୟରେ ପ୍ରଫୁଲ୍ଲର ହିଦ କମ୍ପୁଥାଏ । ବସନ୍ତ ତା' ପାଖକୁ ନ ଆସୁଣୁ ସେ ଗଛ ଉଡ଼ାଳରୁ ଦଉଡ଼ି ଯାଇ ଆଗ ତା' ମୁହଁରେ ହାତ ଦେଇ କହିଲା, 'ଚୁପ୍ କର, ଚୁପ୍ କର' । ଧୀରେ ଧୀରେ ସେଠାରୁ ଯାଇ ଦୁଇଘାଇ ଗଛମୂଳରେ ଠିଆହେଲେ ।

ପ୍ରଫୁଲ୍ଲ ଖଣ୍ଡେ ଓହଳ ଧରି ନାଚି ନାଚି ତଳୁ ପ୍ରାୟ ଗୃରି ପାଞ୍ଚ ହାତ ଉପରକୁ ଉଠିଗଲା । ବସନ୍ତ ତଳେ ଠିଆ ହୋଇ ଡାକୁଥାଏ, "ଏତେ ଉଚ୍ଚକୁ ଯା'ନା ପଫୁଲ, ଦାଇ ଗାଳଦେବ ।" ଏତେବେଳେ କି ପ୍ରଫୁଲ୍ଲକୁ ଆଉ ଏ ସବୁ କଥା ଶୁଭୁଛି ! ସେ ଓହ୍ଲାଇ ଆସି ବସନ୍ତକୁ ଠେକ ହାତେ ଦୁଇହାତ ଉଚ୍ଚରେ ଥିବା ଗୋଟିଏ ଓହଳରେ ବସାଇ ଦେଇ ନିଜେ ଯାଇ ଯଥା ସ୍ଥାନରେ ବସିଲା । ସେଠାରେ ବସି ଦୋଳି ଖେଳି ଖେଳି ନିଜର ମୁରବୀତ୍ୱ ବସନ୍ତକୁ ଦେଖାଇବାକୁ ଲାଗିଲା । ଅକସ୍ମାତ୍ ହାତରେ ଧରିଥିବା ସରୁ ଡାଳ ଖଣ୍ଡି କପରି ଭାଙ୍ଗିଗଲା ଓ ମୁହୂର୍ତ୍ତରେ ପ୍ରଫୁଲ୍ଲକୁ ଘେନି ତଳେ ପଡ଼ିଗଲା ! ଏହା ଦେଖି କ୍ଷୀଣକାୟ ବସନ୍ତର ମୁଣ୍ଡ ଘୂରିଗଲା, ସେ ମଧ ସଙ୍ଗେ ସଙ୍ଗେ ପଡ଼ିଗଲା । ଦୁଇ ଭାଇ ଅଚେତନ ।

ସନ୍ଧ୍ୟା ସମୟ । ହଳଆମାନେ ବିଲରୁ ଫେରୁଥିଲେ । ପିଲା ଦିଓଟିଙ୍କୁ ଏପରି ଭାବରେ ପଡ଼ିଯାଇଥିବାର ଦେଖି ଦଉଡ଼ି ଯାଇ ଦୁହିଁଙ୍କୁ ଉଠାଇ ଆଣିଲେ । ସେହିକ୍ଷଣି ବସନ୍ତର ଚେତନା ହେଲା; କାରଣ ତା'ର ଆଘାତ ଅତି ସାମାନ୍ୟ; କିନ୍ତୁ ପ୍ରଫୁଲ୍ଲର ମସ୍ତକରୁ ଅନବରତ ରୁଧିର ବହିବାକୁ ଲାଗିଲା, ଗୋଡ଼ ହାତ ମଧ ଲୋଚ୍ଚ ହୋଇ ଯାଇଛି, ଆଉ ସିଧାକରି ହେଉନାହିଁ । ଦେହଯାକ ସ୍ଥାନେ ସ୍ଥାନେ କ୍ଷତଦାଗ୍ର ସର୍ବାଙ୍ଗ ରୁଧିରମୟ ହୋଇ ଯାଇଛି । ଅନେକ କ୍ଷଣ ପରେ ତାର ଚେତନା ହେଲା, ସେ କେବଳ ଆଖି ଫିଟାଇ ଜୁଳୁଜୁଳୁ କରି ଚ୍ଛହିଁଲା, ପଦେ ହେଲେ କଥା ମୁଖରୁ ବାହାରିଲା ନାହିଁ । ବସନ୍ତକୁ ଯେ ପଗୃରେ, ସେ କେବଳ ଦୁଇ ଆଖି ଲୋତକରେ ଥନ ଥନ କରି କାତର ଭାବରେ କହେ, "ପ୍ରଫୁଲ୍ଲ ପଳିଗଲା ।" ଏଥିରୁ ହିଁ ଲୋକମାନେ ଗଛ ଉପରୁ ପଡ଼ିଥିବାର ଯାହା ଅନୁମାନ କଲେ । ସଙ୍ଗେ ସଙ୍ଗେ ଜଣେ ଲୋକ ଯାଇ ମଧୁବାବୁଙ୍କ

ନିକଟକୁ ତାର କରିଦେଇ ଆସିଲି—"ପ୍ରଫୁଲ୍ଲ ଭୟଙ୍କର ଆଘାତ-ପ୍ରାପ୍ତ । ଶୀଘ୍ର ଆସନ୍ତୁ ।" ପ୍ରଫୁଲ୍ଲର ଆଘାତ, ସେ ପୁଣି ଭୟଙ୍କର ହେବ, ଏହା ସେ କଳ୍ପନା କରି ନ ଥିଲେ । ପ୍ରତିଦିନ ସେ ପଢ଼ି-ଥାଏ, ପ୍ରତିଦିନ ମଧ୍ୟ ଭଲ ହୋଇ ଖେଳିବାକୁ ଯାଏ ଆଜି ଏ କଅଣ ! ଓକିଲ ବାବୁ ଚତୁର୍ଦ୍ଦିଗ ଅନ୍ଧକାର ଦେଖିଲେ । ଶୀଘ୍ର ଦୁଇଜଣ ଡାକ୍ତରଙ୍କୁ ସଙ୍ଗରେ ନେଇ ସନ୍ଧ୍ୟା ଗାଡ଼ିରେ ଆସି ଗ୍ରାମରେ ପହଞ୍ଚିଲେ । ଡାକ୍ତରମାନେ ଚିକିତ୍ସାରେ ଲାଗିଗଲେ । ସେ-ଦିନ ରାତିରେ ପ୍ରଫୁଲ୍ଲ କାହାକୁ ଚିହ୍ନି ନାହିଁ କିମ୍ବା କଥା କହି ନାହିଁ । ଅଧିକ ପରିମାଣରେ ମସ୍ତିଷ୍କରୁ ରକ୍ତସ୍ରାବ ହେବାରୁ ସେ ଅତ୍ୟନ୍ତ ଦୁର୍ବଳ ହୋଇପଡ଼ିଛି । ଘଣ୍ଟାଏ ଦୁଇଘଣ୍ଟା ପରେ ସେ ବେହୋସ୍ ହୋଇଯାଉଛି । ସେଥିଲାଗି ସେଦିନ ରାତିରେ ବାପା କିମ୍ବା ଡାକ୍ତର ଆସିଥିବାର ସେ ଜାଣେ ନାହିଁ । ପରଦିନ ସକାଳେ ପିତା ଯାଇ ତା ଖଟ ନିକଟରେ ଠିଆହେବା ମାତ୍ରକେ ଗ୍ଲେଟ ହାତଟିଏ ବିଛଣାରୁ ବାହାରି ତାଙ୍କ ହାତ ଧରି ବସାଇଲା । ଗୋଟିଏ ଦିନରେ କେଇଁ ଉଜ୍ଜ୍ୱଳ ପଡ଼ିବ ବୋଲି ମଧୁବାବୁଙ୍କ କଣ୍ଠ ରୁଦ୍ଧ ହୋଇ ଆସିଲା । ଅତି କଷ୍ଟରେ ସେ ନିଜକୁ ସଂଯତ କରି ତାଙ୍କର ସେହି ମିଷ୍ଟାଳାପୀ ଲୋକପ୍ରିୟ ଶିଶୁଟି ନିକଟରେ ବସିପଡ଼ିଲେ । ପ୍ରଫୁଲ୍ଲ ଗ୍ଲେଟ ଗ୍ଲେଟ ଓଠ ଦିଓଟି ଖୋଲି କ୍ଷୀଣକଣ୍ଠରେ କହିଲା, "ବାପା, ମୁଁ ବସନ୍ତକୁ ଏକା କରି ଛୁଉ ନାହିଁ ? ସେ ମୋତେ ଦେଖି ଭୁଇଁରେ ପଡ଼ିଗଲା ! ମୋ ଉପରେ ତ ରାଗି ନାହିଁ ?" ପିତା ମୁହଁକୁ ତଳକୁ ନୁଆଁଇଲେ, ଇଚ୍ଛା, ତାଙ୍କ ଲୋତକ ଯେପରି ପ୍ରଫୁଲ୍ଲ ଦେଖି ନ ପାରେ । ପ୍ରଫୁଲ୍ଲ ପିତାଙ୍କ ହସ୍ତକୁ ଆସ୍ତେ ଆସ୍ତେ ହଲାଇ କହିଲା, "ବାପା, ମୁହଁ ଟେକ, ମୋ ଆଡ଼କୁ ଚାହଁ, ମୁଁ କଣ ଭଲ ହୋଇଯିବି ନାହିଁ, ମୁଁ କ'ଣ ଆଉ ଖେଳିପାରିବ ନାହିଁ !" ପିତା ବାଷ୍ପରୁଦ୍ଧ-

କଣ୍ଠରେ ଉତ୍ତର ଦେଲେ, "ଏହି ବଡ଼ ଡାକ୍ତର ଦୁଇଜଣଙ୍କୁ ମୁଁ ଆଣିଛି ପରା, ଶୀଘ୍ର ଭଲକରି ଦେବେ ଯେ ।"

ରୋଗୀ ସହିତ କୌଣସି ପ୍ରକାର କଥାବାର୍ତ୍ତା କରିବାକୁ ଡାକ୍ତର ମଧୁବାବୁଙ୍କୁ ମନା କରି ଗଲେ—ସେ କ ସ୍ଥିର ରହିବାର ପିଲା । ବସନ୍ତକୁ ଯେପରି ଦେଖିଛି, ତତ୍‌କ୍ଷଣାତ୍ ଗଳ୍ପ ଆରମ୍ଭ କରିଦେଲା । ବସନ୍ତ ମଧ୍ୟ ଭାଇର ଯେପରି କଷ୍ଟ ହୋଇ ନାହିଁ, ଏହିପରି ଭାବରେ ତା ସଙ୍ଗରେ ଯୋଗ ଦେଲା । ପ୍ରଫୁଲ୍ଲ କହିଲା, "ବସନ୍ତ, ମୁଁ ଏଇ ଖଟ ଉପରେ ବୋଉ କୋଳରେ ଶୋଇ କେତେ ସାଧବ ଘର କଥା ଶୁଣିଛି, କେତେ ଗୀତ ଶୁଣିଛି, ଗୁଗୁପାଞ୍ଚ ହୋଇଚି ।" ମାତାଙ୍କ ବିୟୋଗକାଳରେ ବସନ୍ତର ବୟସ ଏକ ବର୍ଷ ମାତ୍ର; କିନ୍ତୁ ସେ ସମସ୍ତ ଦେଖିଥିଲା ପରି ବଡ଼ ବଡ଼ ଡୋଳା କାଢ଼ି ସବୁ ଯେପରି ବର୍ତ୍ତମାନ ଦେଖି ନେଉଛି । ଏହି ଭାବରେ ମୁଁ ଦେଖିଚି ବୋଲି କହିବାକୁ ଯିବା ସମୟରେ ପ୍ରଫୁଲ୍ଲ ମୁରୁକି ହସି କହିଲା, 'ତୁ ତ ଜମା ଦେଖି ନାହୁଁ, ଖାଲି ମିଛରେ କହିବାକୁ ଯାଉଛୁ ।' ବସନ୍ତ ବଡ଼ ନିରାଶ ହୃଦୟରେ ତୁନି ହୋଇ ରହିଲା । ତାକୁ ଚୁହିଁ ପ୍ରଫୁଲ୍ଲର ଦୁଃଖ ହେଲା । ଆଉ ଗୋଟାଏ କଥା ସେ ଆରମ୍ଭ କରିଦେଲା । ବସନ୍ତକୁ କହିଲା, "ଯା' କ ବାପାଙ୍କଠାରୁ ସେ କର୍ପୂରମାଳାଟା ମାଗି ଆଣିବୁ ।" ଅଳ୍ପକ୍ଷଣ ପରେ ବସନ୍ତ ଫେରି ଆସିଲା, ତା ପଛରେ ମଧୁବାବୁ କର୍ପୂରମାଳାଟି ଧରି ଆସିଲେ ଏବଂ କହିଲେ, "ବାପା, ଡାକ୍ତରମାନେ ପରା ମନା କରୁଛନ୍ତି ଗପ କରିବାକୁ, ଭଲ ହେଲେ ତ କେତେ ଗପ କରିବୁ ?" ପ୍ରଫୁଲ୍ଲ ଚିରଦିନିଆ ମୁରୁକି ହସଟିକି ହସି କହିଲା, "ହଉ, ହଉ, ତୁମେ ତେବେ ସେ ମାଳାଟିକୁ ବସନ୍ତକୁ ଦିଅ, ସେ ବଡ଼ ହେଲେ ପିନ୍ଧିବ । ମୁଁ ସେ ମାଳାଟିକୁ ବସନ୍ତକୁ ଦେବି ।" ତତ୍ପରେ ପିତା ମାଳାଟି ବଢ଼ାଇ ଦେବାରୁ

ବସନ୍ତକୁ ପାଖକୁ ଡ଼ାକି ତାକୁ ପିନ୍ଧାଇ ଦେଲା । ବସନ୍ତ ମାଳାର ସୁଗନ୍ଧରେ ମୋହିତ ହୋଇ କିଛିକ୍ଷଣ ଖେଳ ସାରି ପିତାଙ୍କୁ ରଖିବା ଲାଗି ଦେଲା ।

ଡାକ୍ତର ଦୁଇଜଣ ଯାହା ଦେଖିଲେ, ସେଥିରେ ସେମାନେ ମଧୁବାବୁଙ୍କୁ ବିଶେଷ ଆଶା ଦେଲେନାହିଁ । ଯଦି କୌଣସିମତେ ରୋଗୀର ବଞ୍ଚିବା ସମ୍ଭବ ହୁଏ, ତାହାହେଲେ, ସେ ଚଳନ୍ତଶକ୍ତିହୀନ ହୋଇ ରହିବ । ପିତାଙ୍କର ବୁଦ୍ଧି ହଜିଗଲା । ଏଡ଼େ ଚଞ୍ଚଳ ପିଲା —ସେ କିପରି ସ୍ଥିର ହୋଇ ବସି ରହିବ ? ପ୍ରଫୁଲ୍ଲ ଶୋଇଥିବା ଘରର ଟିକିଏ ଦୂରରେ ଡାକ୍ତରମାନେ ଏପରି କଥାବାର୍ତ୍ତା କରୁଥିଲେହେଁ ସେ କିପରି ଶୁଣିପାରି କାନ୍ଦି କାନ୍ଦି ଅସ୍ଥିର ! ଡାକ୍ତର ଦୁଇଜଣଙ୍କ ସାଙ୍ଗରେ ପିତା ଯେତେବେଳେ ସେ ଘରକୁ ଆସିଲେ, ପ୍ରଫୁଲ୍ଲ କାନ୍ଦ କାନ୍ଦ ହୋଇ କହିଲା, "ନାହିଁ ବାପା, ମୁଁ ମରିବି ପଛକେ ଏକାଜାଗାରେ ବସି ରହି ପାରିବି ନାହିଁ । ଡାକ୍ତରବାବୁ, ମତେ ଆଉ ଔଷଧ ଦିଅ ନାହିଁ, ମୁଁ ମରିଯାଏ ।" ମଧୁବାବୁ ଏହି ଅବୋଧ ବାଳକଟିକୁ ବୁଝାଇବାକୁ ଅନେକ ପ୍ରକାର ଚେଷ୍ଟା କଲେ । ସେ ବୁଝିବ କାହିଁକି ? ଅଭିମାନ ସ୍ୱରରେ କହିଲା, "ନାହିଁ ବାପା, ମୋ ଉପରେ ସମସ୍ତେ ବିରକ୍ତ, ମୁଁ ମରିଗଲେ ଭଲ ।" ବାପା ତା'ର ମୁଣ୍ଡରେ ହାତ ରଖି କହିଲେ, "ନାହିଁ, ତୋ ଉପରେ କେହି ବିରକ୍ତ ନୁହନ୍ତି, ତୁ ଭଗବାନଙ୍କୁ ଡାକ, ଭଲ ହୋଇଯିବୁ ।" "ନା, ଭଗବାନଙ୍କୁ ଡାକିବି ନାହିଁ । ତୁମେ ତ ମୋତେ ଆଦୌ ଭଲ ପାଅ ନାହିଁ ।" ବାଷ୍ପଗଦ୍‌ଗଦ୍ କଣ୍ଠରେ ପିତା ଉତ୍ତର ଦେଲେ, "ତତେ ଭଲ ପାଏ ନାହିଁ, କାହାକୁ ଭଲ ପାଏ ?" ପ୍ରଫୁଲ୍ଲ ପୂର୍ବବତ୍ ଅଭିମାନ ସ୍ୱରରେ କହିଲା, "ମୋତେ ଜମା କାଖ କରି ନାହିଁ କି କୋଳରେ ବସାଅ

ନାହିଁ ।” ପିତା ହାସ୍ୟ ଓ ଅଶ୍ରୁମିଶା କରୁଣ ଦୃଷ୍ଟିରେ ଚାହିଁ ପଚାରିଲେ, “ତତେ ଜମା କୋଳରେ ଧରନାହିଁ ?” “ଥରେ, କ'ଣ ଦ'ଥର, ସବୁବେଳେ ତ ବସନ୍ତକୁ ଧରିଥାଏ ।”

“ସେ ପରା ତୋ ସାନଭାଇ, ଏଇଥିପାଇଁ ହିଂସା କରୁଛୁ ?” “ନାହିଁ ବାପା, ହିଂସା କରୁ ନାହିଁ ଯେ, ବୋଉ ମରିଗଲା ଦିନୁ ମୋତେ ଆଉ କେହି ଭଲପାଆନ୍ତି ନାହିଁ ।”

ପିତା ଏଇ ଅଭିମାନୀ ପୁତ୍ରଟିକୁ କୋଳକୁ ଟାଣି ଆଣି ଚୁମ୍ବନ କଲେ, ମନେ ପଡ଼ିଗଲା ସ୍ତ୍ରୀ ମୃତ୍ୟୁଶଯ୍ୟାରେ କହିଥିଲେ, “ପ୍ରଫୁଲ୍ଲ ମୋର ଘରି ଅଝଟ, ତାକୁ ବସନ୍ତଠାରୁ ଅଲଗା କରି କେବେ ଦେଖିବ ନାହିଁ ।” ନିଜର ଅଲକ୍ଷ୍ୟରେ ସାତ ଆଠ ବିନ୍ଦୁ ଲୋତକ ପ୍ରଫୁଲ୍ଲର ମସ୍ତକରେ ଖସିପଡ଼ିଲା । ପ୍ରଫୁଲ୍ଲ ତାହା ଅନୁଭବ କରି ବାପାଙ୍କ ଛାତିରେ ହାତ ଦେଇ କହିଲା, “ବାପା ତୁମେ କାନ୍ଦୁଚ କାହିଁକି, ମୁଁ କ'ଣ ସତେ ଭଲ ହେବି ନାହିଁ ? ତୁମେ କାନ୍ଦିଲେ ମୋତେ ବି କାନ୍ଦ ମାଡ଼ିବ ।” ଏହା କହୁ କହୁ ତା ଆଖି ମଧ୍ୟ ଲୋତକରେ ଛଳ ଛଳ ହୋଇ ଆସିଲା ।

ଦୁଇଦିନ ପରେ ରୋଗୀର ଦୁର୍ବଳତା ଅତିଶୟ ହୋଇ ପଡ଼ିଲା, ନାଡ଼ି କ୍ରମେ ଶିଥିଳ ହୋଇ ଆସିଲା । ଡାକ୍ତରମାନେ ଏକରକମ ଆଶା ଛାଡ଼ି ବସିଲେ । ସେ ଦିନ ବସନ୍ତ ଆସି କହିଲା, “ପ୍ରଫୁଲ୍ଲ ଆଜି ହଳଦିଆଳିକା, ଫୁଲ ଆଣିବାକୁ ଯିବୁ ନାହିଁ ।” ପ୍ରଫୁଲ୍ଲ ତାକୁ ହାତ ଠାରି ଖଟ ଉପରକୁ ଡାକିଲା ଏବଂ ତାକୁ ବାହୁଦ୍ୱାରା ବେଷ୍ଟନ କରି ଅତିକଷ୍ଟରେ କହିଲା, “ମୋ ଦିହ ପରା ଭଲ ହୋଇ ନାହିଁ ।” ଭଲ ହେବାର କୌଣସି ସହଜ ଉପାୟ ଖୋଜି ନ ପାଇ ବସନ୍ତ କହିଲା, “କାଇଁକି ତୁ ଭଲ ହେଇ ଯାଉନୁ ?” ପ୍ରଫୁଲ୍ଲ ଅଳ୍ପ ହସି କହିଲା, “ତୋ ଦେହ ଭଲ ନ

ଥିଲେ ତୁ କ'ଣ ମନକୁ ଇଚ୍ଛାକଲେ ଭଲ ହୋଇଯାଉ ?"
ବସନ୍ତକୁ ଏ ବିଷୟରେ ବଡ଼ ଗମ୍ଭୀର ଭାବରେ ଚିନ୍ତା କରିବାର
ଦେଖି ପ୍ରଫୁଲ୍ଲ କହି ଉଠିଲା, "ବସନ୍ତ, ମୁଁ ଯେଉଁ ଗୀତ ତତେ
ଶିଖାଇଥିଲି ତାକୁ ବୋଇଲୁ !" ବସନ୍ତ ଶିଖିଥିବାମତେ ଆଖି
ବୁଜି ଓ ହାତ ଦିଓଟି ଯୋଡ଼ି ମଧୁର କଣ୍ଠରେ ଗାଇଲା, "ଜଗନାଥ
ସ୍ୱାମୀ ନୟନ ପଥଗାମୀ ଭବତୁ ମେ ।" ବସନ୍ତକୁ ପଚାରିଲେ ସେ
କହେ, ଏହା ପରେ ତାର ଭାଇର ସ୍ମୃତି ଆଉ କିଛି ମନେ ନାହିଁ ।

କେତେ ବର୍ଷ ବିତିଗଲାଣି । ପ୍ରଫୁଲ୍ଲ ମଧୁବାବୁଙ୍କର ଆନନ୍ଦର
ସଂସାର ଭାଙ୍ଗିଦେଇ ଗଲା । ପିତାଙ୍କ ହୃଦୟରେ କେତେ ଦିନ ସେହି
ସ୍ଥାନଟା ଖାଲି ପଡ଼ିଗଲା । ତପରେ ସବୁ ପାସୋରି ଯାଇ ବସନ୍ତ
ପଢ଼ାପଢ଼ି ଇତ୍ୟାଦିରେ ତାଙ୍କର ମନ ଖେଳିଗଲା । ଆଜି ବସନ୍ତର
ବିଭାଘର । ଆନନ୍ଦ ଉତ୍ସାହରେ ତାଙ୍କ ଘର ଭାସୁଛି । ପୁଅ
ପାଲିଙ୍କିରେ ବସିଲାଣି ଏବଂ ଗଉଡ଼ ହୁଁ ହୁଁ ଆରମ୍ଭ କରି
ଦେଲେଣି । ହଠାତ୍ ଘରଭିତରୁ ଦଉଡ଼ି ଆସି ମଧୁବାବୁ ଡାକିଲେ,
"ଆରେ ପାଲିଙ୍କି ରଖ, ପାଲିଙ୍କି ରଖ, ଗୋଟାଏ ବଡ଼ କଥା ବାକି
ରହି ଯାଇଛି ।" ଏହା କହି ପାଲିଙ୍କି ପାଖକୁ ଯାଇ ପୁଅ ବେକରେ
ଗୋଟିଏ ବହୁ ପୁରାତନ କର୍ପୂର ମାଳା ଲମ୍ବାଇ ଦେଇ କହିଲେ,
"ଏଇଟି ତା ବଡ଼ ଭାଇର ଉପହାର ।"

---

# ଘର

## ଶ୍ରୀ ଗୋପୀନାଥ ମହାନ୍ତି, ଏମ୍. ଏ.

-୧-

ଦକ୍ଷିଣର ରେଳଗାଡ଼ିରୁ ଜିନସପତ୍ର, ପିଲାପିଲି ଓହ୍ଲାଇ ନେଇ ରାଜଧାନୀକୁ ନୂଆ ବଦଳି ହୋଇଥିବା କର୍ମଚାରୀ ସଦାଶିବ ଯେତେବେଳେ ଷ୍ଟେସନ ଫାଟକ ଟପି ପଦାକୁ ଆସିଲା; ସେତେବେଳେ ଝିଅ ମନ୍ଦାକାନ୍ତା ଆଗ୍ରହରେ ଥରେ ପଚାରିଲା— "ବାବା, ଆମ ଘର ?" ତା'ଠୁଁ ଦୁଇବର୍ଷ ସାନପୁଅ ଶାର୍ଦ୍ଦୁଳ ବିକ୍ରୀଡ଼ିତ ଉଲ୍ଲାସରେ ଷ୍ଟେସନ ଘର ଭିତରେ କୁଦା ମାରିଲା ପାଟି କରି କରି,—"ଆମ ଘର, ଆମ ଘର ।" ସାନ ପୁଅ ଅନୁଷ୍ଟୁପ୍ ଓ ସାନଝିଅ ଗାୟତ୍ରୀ ଏତିକିରୁ ବୁଝିଲେ ଯେ, ଏ ଉତ୍ସବ ପାଳିବା ଉଚିତ; ତେଣୁ ଦୁହେଁ ବେକରେ ହାତ ଛନ୍ଦାଛନ୍ଦି ହୋଇ ଡେଇଁ, ଡେଇଁ ବୁଲିଲେ ପାଟି କରି କରି—"ଆମ ଗଲି, ଆମ ଗଲି ।" ପଛରେ ଆସୁଛନ୍ତି ତାଙ୍କ ମା ଦମୟନ୍ତୀ, କହିଲେ—"ପାଣି ସୋରେଇଟା କ'ଣ ରେଲରେ ରହିଗଲା କି ?"

"ନା ଅଛି ଚାଲ," ସଦାଶିବ କହିଲା । ପିଲାଙ୍କୁ ଆକଟି କହିଲା, "ହେଇ ପାଟି କରନା ।"

ଲୋକେ ଖୋଜୁଛନ୍ତି । ଖୋଜିବାର ବି କଥା, ମାଲ ବହୁତ । "ବାବୁ, ଗାଡ଼ି ? ବାବୁ ?" କହି ଗାଡ଼ିବାଲାମାନେ ଯେତେବେଳେ ଘେରିଗଲେ, ମନ୍ଦାକ୍ରାନ୍ତା ଆଉଥରେ ପଚାରିଲା,—ବାପା, ଆମ ଘର ଏଠୁ କେତେଦୂର ?

ସଦାଶିବ କିଛି ଜବାବ୍ ଦେଲାନାହିଁ । ଜିନିଷପତ୍ର ଫଟାଫଟି କରିଦେଇ ପିଲାଙ୍କୁ ଧରି ଗୋଟିଏ ଘୋଡ଼ାଗାଡ଼ିରେ ବସି ଯାତ୍ରା ଆରମ୍ଭ କରିଦେଲା ।

ଗାଡ଼ି ଭିତରେ ସ୍ତ୍ରୀକୁ ପଚାରିଲା, ସେ ଆସନ୍ନ-ପ୍ରସବା ।
"କେମିତି ଅଛୁ ?"

"ଭଲ ।"

"ଆରେ ପିଲାଏ ବୋଉ ଉପରେ ମାଡ଼ି ହୁଅ ନାହିଁ ।

ଶାର୍ଦ୍ଦୁଳ-ବିକ୍ରୀଡ଼ିତ ସ୍ଲୋଗାନ ଦେଲା,—"ଆମ ଘର ।"

ସଙ୍ଗେ ସଙ୍ଗେ ସମସ୍ତେ ମିଶି ସମସ୍ୱରରେ ଚିତ୍କାର,—"ଆମ ଘର, ଆମ ଘର ।"

ଦୁ'ପାଖ ସିଟ୍‌ରୁ ସ୍ୱାମୀ ସ୍ତ୍ରୀ ମୁହଁ ଚାହାଁଚାହିଁ ହେଲେ, ଦମୟନ୍ତୀ ହସିଲା, ସଦାଶିବ ମୁହଁ ପୋତିଲା ।

ବାରବର୍ଷ ପରେ ସେ ରାଜଧାନୀକୁ 'ବଦଳି' ହୋଇଛି । ମଝିରେ ବର୍ଷେ ଦୁ' ବର୍ଷରେ ଥରେ ଅଧେ ନ ଆସିଛି ନୁହେଁ; କିନ୍ତୁ ସଂସାର ସମେତ ବଦଳି ଏହି ପ୍ରଥମ । ଏହି ସେହି ପୁରୁଣା କଟକ; ତାର ବାଲ୍ୟର, ଯୌବନର । ଆଉ ଏଠି ଚାରିକୋଶ ଦୂରରେ ନଈ ସେପାରି ସ୍ଥାନ ଗୋଟିଏ ଯେଉଁଠି ସେ ଜନ୍ମ ହୋଇଥିଲା ।

ଜନମମାଟିର ଭିଟା ଉପରେ ଲଙ୍କାମରିଚ, ବାଇଗଣ ଲାଗିଥିବ, ଭିଟା ବାଇଗଣ ଭଲ ଫଳୁଥିବ ।

ଆଉ ଥିବ କଳାମିଶ୍‌ମିଶ୍ କଖାରୁ ଡଙ୍କ, ତାର ଟେକା ଟେକା ଝାଆଁ ସିଆ ପତ୍ର ।

-୨-

କୋଠା-କୋଠା-କୋଠା । ଠିଆ ହୋଇଛୁ, ଡିଆଁରି ଗୃଲଛୁ, ଇଟା ଗଦା ହେଉଛୁ, ବାଲି ଗଦା ହେଉଛୁ । ଇଟା ବୋଝେଇ ହୋଇ, ଲୁହାଛଡ଼ ବୋଝେଇ ହୋଇ ବିକଟ ବେଗରେ ଗୃଲଛନ୍ତି ଟ୍ରକ ମାଳ ମାଳ । ମଟରର ଗୃପି ହୋଇ ମରିଗଲ୍ ବା କିଏ,—ଏମିତି ମରି ନ ଥାନ୍ତା, ସେମିତି ମରନ୍ତା,—ପ୍ରଗତି ଅଟକୁ ନାହିଁ । ଭଁ ଭଁ ମଟରଗାଡ଼ି, କେତେ ବଡ଼ ଲୋକ । ଉଦ୍‌ବୃଦ୍ଧ କଟକ, ସମୃଦ୍ଧ କଟକ । ଜାତି ଜାତି ଲୋକ । ଗହଳି ସହର ।

ବାରବର୍ଷତଳେ ଏଠୁ ଯାଇଥିଲ୍ ସେ । ଜିଲ୍ଲରେ ଜିଲ୍ ବିଶାଳ ଓଡ଼ିଶା । ମନ୍ଦାକାନ୍ତା ବାଲେଶ୍ୱରରେ ଜନ୍ମ, ଶାର୍ଦ୍ଦୂଳ ବିକ୍ରୀଡିତ କୋରାପୁଟରେ, ଅନୁଷ୍ଟୁପ୍‌ର ଜନ୍ମଭୂମି ବୋଡ଼ାସମ୍ବର, ଗାୟତ୍ରୀ ଭଞ୍ଜଭୂମିର ଝିଅ, ଜନ୍ମ ରସଲକୋଣ୍ଡାରେ, ଆଉ ଯେଉଁଠି ଜନ୍ମ ହେବାର ଅଛୁ, ତାର ପରିକଳ୍ପନା ସୁଦୂର ଅରଣ୍ୟାନୀ ଭିତରେ ମାଙ୍କଡ଼ନଗ୍ନ ସବ୍‌ଡ଼ିଭିଜନରେ—ସେ କଟକରେ ସୂର୍ଯ୍ୟ ଦେଖିବ ।

କିନ୍ତୁ କେଉଁଠି ? କାହିଁ ତା ପାଇଁ ଘର !

"ଏ ସହର ବଡ଼ଲୋକଙ୍କର," ସଦାଶିବ ସ୍ତ୍ରୀକୁ କହିଲ୍, "ଆମପାଇଁ ଏଠି ସ୍ଥାନ ନାହିଁ ।"

"ଗୃଲ ତ—ସ୍ତ୍ରୀ କହିଲ୍ ।"

"ସମାସ୍ୟାଟା କ'ଣ ଜାଣ ?" ଦୁଃଖିତ ହୋଇ ସଦାଶିବ କହିଲ୍,—"ଯେଉଁ ଯୁଗରେ ଯେଉଁମାନେ ମରିଯିବା ଉଚିତ, ସେମାନେ ମରନ୍ତି ନାହିଁ ।" "ଏତେ ବେସ୍ତ ହେଲେ କ'ଣ ହେବ,

କହିଲି ?" ଦମୟନ୍ତୀ ବୁଝେଇଲେ, "ଘର ଖଣ୍ଡିଏ ମିଳିଯିବ ନାହିଁ ଯେ—।"

"ମିଳିବ ନିଶ୍ଚୟ," ଦାନ୍ତ ଚିପି ଚିପି ସଦାଶିବ କହିଲା, "କିନ୍ତୁ ଡେରି ଅଛି ।"

ତାର ଜଳନ୍ତା ଦୃଷ୍ଟି ଆଉ ଫମ୍ପା ଦୀର୍ଘଶ୍ୱାସ ନିଷ୍ଫଳ ରାଗରେ ଆକ୍ରମଣ କଲା ରାସ୍ତା ଧୂଳିକୁ ।

ମଟର ପଛରେ ମଟର ଗୁଡ଼ୁଛି, ମଟର ଗୁଡ଼ୁଛି ।

—୩—

ଗନ୍ତବ୍ୟ ଲକ୍ଷ୍ୟ ବନ୍ଧୁ ରତ୍ନାକରର ଘର; ରତ୍ନାକର ଯୁଦ୍ଧୋତ୍ତର ବଜାରରେ ଲୁହା ବ୍ୟବସାୟ କରେ । ଅଣଓସାର ବାଟଘରକୁ ଛାଡ଼ି ଖୁବ୍ ସାନ ଗୋଟିଏ ଶୁଆଘର । ଖଟକୁ ଖଟ ଯୋଡ଼ି ତଳେ ଜିନିଷପତ୍ର ଗଦେଇ ରଖି, ଶିକାକୁ ଓହଳେଇ ବାକି ଯେତିକ ସ୍ଥାନ ଫାଙ୍କା ରହିଲା, ସେତିକରୁ ରତ୍ନାକର ତାର ଓ ନିଜର ପିଲାମାନଙ୍କ ପାଇଁ ନିଃଶ୍ୱାସ ଗ୍ରହଣ କରେ । ପିଲା, ତାର ବି ପାଞ୍ଚୋଟି ସ୍କୁଲଯାତ୍ରୀ, ସ୍ତ୍ରୀ, ସେ ଓ ଗୃହକରବାକର । ତା' ଛଡ଼ା ଘରେ କୁକୁର, ବିଲେଇ, ମୂଷା ଓ ଗାଣ୍ଡିଗୋଡ଼ି ।

ଏପରି ଅବସ୍ଥାରେ ରତ୍ନାକର ଯେ ଦୂରାଗତ ବନ୍ଧୁର ଅଭ୍ୟର୍ଥନାର ଭାର ନେବ, ଏଥିରେ ଆଶ୍ଚର୍ଯ୍ୟ ହେବାର କଥା; କିନ୍ତୁ ଏ ସଂସାରରେ ଆଶ୍ଚର୍ଯ୍ୟ ଅପ୍ରତ୍ୟାଶିତ ସମ୍ଭବ ହୋଇଥାଏ,— ଅପ୍ରତ୍ୟାଶିତ ଉଦାରତା, ଅପ୍ରତ୍ୟାଶିତ ନିଷ୍ଠୁରତା ଓ ଆକସ୍ମିକ ଘଟନା, ବିଶେଷତଃ ସଦାଶିବ ସେହିପରି ଯୁକ୍ତି କରେ, କହେ, ଆକସ୍ମିକତାରେ ବିଶ୍ୱାସ ନ ରଖିଲେ ଜୀବନ ରଖିବାର ପ୍ରୟୋଜନ ନାହିଁ ।

କାରଣ, ନଜର ଅବସ୍ଥା ଓ ରୋଜଗାରକୁ ଗୃହିଁ ଯେଉଁ ପ୍ରକାର ସେ ଅଙ୍କ କଷୁ, ସେ ଦେଖେ ଅଙ୍କର ଫଳ କେବଳ ଅନାହାର, ଋଣ, ଇନ୍‌ସଲଭେନ୍‌ସି, ତାପରେ ଅନ୍ଧକାର, ଯଦି ଆକସ୍ମିକ କିଛି ନ ଘଟିବ । ସେ ସଂସାରରେ ଗ୍ରୀକ୍ ଟ୍ରେଜେଡ଼ିରେ ଆସ୍ଥାବାନ୍ ।

ତେଣୁ ରତ୍ନାକର ଶଠେରେ ଅଣ୍ଡାଭଡ଼ିଥିଲା, "ରହ ମାସେ ପକ୍ଷେ, ମୋର ଆପତ୍ତି ନାହିଁ ।"

ତାର ଗେଞ୍ଜିଗାଞ୍ଜି ବସାକୁ ଲାଗି ପଦାରେ ଖଣ୍ଡିଏ ଗୁଳଆ ଥିଲା; ଯାହା ଠିକ୍ ସଦାଶିବକୁ ହିଁ ଅପେକ୍ଷା କଲାପରି ରହିଥିଲା ।

ଝାଟିମାଟିର କାନ୍ଥ, ଉପରେ ଗୁଳ, ଝରକା ନାହିଁ, ମେଲା ମେଲା ବାଉଁଶ ଜାଳିର ଦୁଆର କବାଟ, ଭିତରେ ଲୁହାର ଯନ୍ତ୍ର-ପାତି କିଛି କିଛି, କାଠ ତାବଲ ଓ ଅନ୍ୟାନ୍ୟ ଅଦରକାରି ଜିନିସ, ପିଲାଙ୍କ ବହି ଆଲମାରି ତିନୋଟି, ଯୋଡ଼ିଏ ଟେବୁଲ, ପାଞ୍ଚଟି ଚୌକି ।

ତଥାପି ତିନୋଟି ଖଟ ପଡ଼ି କିଛି ଖାଲି ଜାଗା, ଦୁଇ କଡ଼ରେ କିଛି ଖାଲି ଭୂଇଁ ।

"ଏଇ ଘର !" ସଦାଶିବ କହିଲା ।

ରତ୍ନାକର ଆଗେଇ ଆସିଲା । ପଛେ ପଛେ ତାର ସ୍ତ୍ରୀ । ଦୁଇପକ୍ଷର ପିଲା ଦୁଇପକ୍ଷଙ୍କୁ ଅନାଇ ରହିଲେ ।

—୪—

ଅନ୍ଧାର, ପ୍ରବଳ ବର୍ଷା ।

ଖଟ ଉପରେ ବିଛଣା ବିଛେଇ ସମସ୍ତେ ଶୋଇଛନ୍ତି ।

ହଠାତ୍ ସଦାଶିବର ନିଦ ଭାଙ୍ଗିଗଲା । କାହିଁକି ସେ ଜାଣେ ନାହିଁ । ପଦାକୁ ଚାହିଁଲା । ଲାଗିଲା, ଏମିତି ଜୀବନ, ପଦାରେ ଅନ୍ଧାର ଓ ମେଘ, ଶୀତରେ ପାଣିରେ ମରିବାର ହିଁ କଥା; ତଥାପି ଲୋକ ମରେ ନାହିଁ,--କୌଣସି ପ୍ରକାରେ ଆକସ୍ମିକ ଆଶ୍ରୟତଳେ ମୁଣ୍ଡ ଗୁଞ୍ଜି ପଡ଼ିରହେ ।

ଭାଗ୍ୟ ପ୍ରତି କୃତଜ୍ଞତା ଜଣାଇଲା, ପୁଣି ରତ୍ନାକର ପ୍ରତି । ଚିନ୍ତାରେ ମନ ଦେଲା,--ଯା ପରେ କ'ଣ ? ଯା ପରେ କ'ଣ ?

ହାତ ଉପରେ ଗୋଟାଏ ମୂଷା ଦଉଡ଼ି ପଳେଇବାର ଅନୁଭବ କଲା, ଚମକି ଉଠିଲା । ଏ ଘରେ ମୂଷାମାନଙ୍କର ଅଗାଧ ଗାତ ସେ ଜାଣେ; ଆଲୁଅ ଥାଇ ବି ସେମାନେ ଖେଳ କସରତ୍ କରନ୍ତି, ଆତଯାତ ହୁଅନ୍ତି । ଅନ୍ଧାରରେ ନିଘାକଲା ଘର ଭିତରେ ନାନା-ଜାତି ଶବ୍ଦ ଲାଗି ରହିଛି । ତା' ପରେ ଆରମ୍ଭ ହେଲା ଗୋଟିଏ ଖଡ଼୍-ଖଡ଼୍, ଝଡ଼୍ ଖଡ଼୍, ଠିକ୍ ତାର ଶୋଇବା ଖଟତଳେ, ତା ସଙ୍ଗେ ସଙ୍ଗେ ଗୋଟାଏ କଣ ଗନ୍ଧ ।

ମୁଣ୍ଡତଳୁ ଟର୍ଚ୍ଚଲାଇଟ୍ କାଢ଼ି ଜାଳି ଦେଖିଲା, ଖଟତଳେ ଗୋଟାଏ ବୁଢ଼ା କୁକୁର, ନାକ ଅଗଠୁ ଲାଞ୍ଜଅଗ ଯାକେ କେଉଁଠି ଗୋଟାଏ ବୋଲି ରୁମ୍ ନାହିଁ, ସବୁ ଉପୁଡ଼ିଯାଇଛି ।

ଯାର ବି ଏ ଘରେ ଦଖଲ ଅଛି ।

କିନ୍ତୁ--

ମଣିଷପଣ ବିସ୍ତାର କରି ଆତିଥେୟତାର ପ୍ରତିଦାନ ଦେବାକୁ ଯାଇ ସଦାଶିବ କୁକୁରକୁ ମାରି ଗୋଡ଼ାଇଲା । କୁକୁର ବି ଦୃଢ-ପ୍ରତିଜ୍ଞ, ସେ ଅନ୍ଧାରକୁ ବର୍ଷାକୁ ଯିବ ନାହିଁ । ଏକର ସେକର ଗୋଡ଼େଇ ଯାଉ ଯାଉ ଅନେକ ପ୍ରତିବନ୍ଧକ, ଖଟ, ଆଲମାରି, ଚୌକି, ଜିନିଷପତ୍ର । ଲାଗିଲା 'ମତେ ଛୁଁ' ଖେଳ । ଏ ପାଖୁ

ସେପାଖ, ସେପାଖୁ ଏପାଖ । କୁକୁର ପ୍ରଚୁର ଆଗ୍ରହରେ ଯୋଗ ଦେଲା ।

ଅଧଘଣ୍ଟାଏ ଏକର ସେକର ହୋଇ ସଦାଶିବ ବିଛଣାରେ ମୁହଁ ମାଡ଼ିଲା । କୁକୁର ମଧ ଆଉ କୁଣ୍ଢେଇ ହେଲା ନାହିଁ, କେବଳ ମଝିରେ ମଝିରେ ପାଁ ପାଁ ସାଁ ସାଁ ଦୀର୍ଘଶ୍ୱାସ, ଆଉ ତା ଦେହର ଗନ୍ଧ; ଯେଉଁଥିପାଇଁ ସେ ଦାୟୀ ନୁହେଁ ଆଦୌ ।

ଜୀବନର ସାଳସ ଗ୍ରହଣ କରିନେଇ ସଦାଶିବ ବର୍ଷାର ଧ୍ୱନିକୁ କାନ ଡେରି ଦେଇ କେତେବେଳେ ଶୋଇ ପଡ଼ିଲା ।

ଆରଦିନ ସକାଳ । ଅଳ୍ପ ଖରା ପଡ଼ିଛି ।

ଲାଗିଲା ଯେପରି କି ଦୁନିଆ ତାକୁ କୁମ୍ଭକର୍ଣ୍ଣ ବୋଲି ଠଉରେଇଛି ଓ ତା'ର ନିଦ ଭାଙ୍ଗିବାକୁ ଗୁରିଆଡ଼ୁ ପଡ଼ୁଛି କାନଫଟା ପାହାର ।

ସହରର ଭାଷାରେ ପହିଲି ସକାଳର ପ୍ରଥମ ସମ୍ବୋଧନ ଶୁଣିଲା, ଲୁହାପିଟା ଲାଗିଛି ।

ମୁଣ୍ଡ ଟେକି ଅନେଇଲା, ପଲେ ମେଣ୍ଢା ଓ ଦି'ଟା ବଳଦ ତା'ର ଖୋଲା ଦୁଆରମୁହଁ ବାଟେ ପଶି ଆସୁଛନ୍ତି । ଅପେକ୍ଷା କଲା ନାହିଁ ।

—୫—

ଘର ଖୋଜିବାକୁ ଅଣ୍ଟା ଭିଡ଼ିଛି ସଦାଶିବ, ପକେଟ୍‌ରେ ଡିବାଏ ପାନ, କଠାଏ ବଡ଼ି ଓ ଗୋଟିଏ ଦିଆସିଲି । ସାମ୍ନାରେ ଗୋଟାଏ ରବିବାର । ଏ ଦେଶ ବ୍ୟକ୍ତିଗତ ଉଦ୍ୟମର ଦେଶ; ତେଣୁ ଏଠି ଅବସ୍ଥା ବ୍ୟକ୍ତିର ବ୍ୟକ୍ତିତ୍ୱକୁ ଆବିଷ୍କାର କରିବାକୁ ସୁଯୋଗ ଦିଏ । ସଦାଶିବ ମନକୁ ମନ ଯୁକ୍ତି କଲା, ସାଇକ୍ଲ ଧରି

ଗତ କଲ ଅନୁସନ୍ଧାନ ଉଦ୍ୟମରେ । ରାଜଧାନୀକୁ ସେ ମନେ ମନେ ବାଣ୍ଟି ନେଲ ଚାରିଖଣ୍ଡ କରି । ଚାରିଦିନର ଯୋଜନା ।

ପାନ ଦୋକାନ, ଖଲାସା, ଛତ ତଳରେ ସ୍ଥାନେ ସ୍ଥାନେ ଧୋବାଧାଉଳିଆ କେହି ହାବୁଡ଼ିଲେ, କେହି ଚହ୍ଲା ଲୋକ, ହୁଏତ ସମ୍ବାଦ ଦେବେ ଏହିମାନେ, ତା'ଛଡ଼ା ରାଜ-କର୍ମଚାରୀ ବନ୍ଧୁମାନେ ।

ଅନେକ ତଥ୍ୟ ସଂଗ୍ରହ କଲ, ଅନେକ ନୂଆ ଘରର ସନ୍ଧାନ ମିଳିଲ ଓ ନୂଆ ମଣିଷଙ୍କର ପରିଚୟ । ଖବର ପାଇବାମାତ୍ରେ ଖାତାରେ ଟିପିନେଇ ସେ ସାଙ୍ଗେ ସାଙ୍ଗେ ଧାଇଁଯାଏ ।

ଘର ନାହିଁ ।

"ହେଇ ତ ଖାଲି ଘର ।"

"ଜଣେ ବାବୁ କଥା କରି ଯାଇଛନ୍ତି ।"

"ସେଠି ଯେଉଁ ନୂଆ ଘରଟି ତୋଳା ହେଉଛି, ସରିଲେ ମିଳିବ ?"

"ଆଗତୁରା ଭଡ଼ା ଠଙ୍କାରେ ଇଟା କଣା ହୋଇ ନହିଁ ପଡ଼ିଥିଲ ।"

ଘର ନାହିଁ ।

କିନ୍ତୁ ସହରର ଭୂଗୋଳ ବିଷୟରେ ଧାରଣା ହେଲ ପ୍ରଚୁର । କେଡ଼ ସହର ! କେତେ ଗଳି ! କେଡ଼େ ବଡ଼ !

ସହରର ବଢ଼ ହୋଇଛି, ସଦାଶିବ ଯେତେବେଳେ ତା'ର 'କର୍ତ୍ତବ୍ୟ କାର୍ଯ୍ୟ'ରେ ବୁଲୁଥିଲ । ଅରଣ୍ୟରୁ ଅରଣ୍ୟାନ, ସେତେବେଳେ ଏ ସହରର ଲୋକେ ଘର ତୋଳିଛନ୍ତି । ରାସ୍ତା ପକେଇଛନ୍ତି । ଯୁଦ୍ଧ ବଜାର, କଣ୍ଟ୍ରୋଲ କାଳ, ଲକ୍ଷ୍ମୀ ଏ ହାତରୁ ସେ ହାତ ହୋଇଛନ୍ତି ଅନ୍ଧାରେ ଅନ୍ଧାରେ । ସହରରେ ଅସଂଖ୍ୟ ବଡ଼ଲୋକ । ତା ପାଇଁ ଘର ନାହିଁ ।

ଯେଉଁଆଡ଼ୁ ଦେଖିଲେ ସହର ଦିଶୁଛି ଖୁବ୍ ବଡ଼ ବସ୍ତପୂ ଘର, ତିଳ୍ପା ସ୍ଥାନ ନାହିଁ; ତେଣୁ ସହରର ଚହ୍ଲୋଟି ହଜୁଛି । ଯେଉଁଠା ଥିଲା ପୋଖରୀ, ହଂସ ଖେଳୁଥିଲେ, ସେଠି ବି'ତାଲା କୋଠା । କେତେ ଥିଲା ଜଳାଭୂଇଁ, କରେ କରେ ନାଗଅଇରି ବଣ, ସେଠି ବସ୍ତି । ଅଣ୍ଟାଏ ପାଣିରେ ବି ଅଦ୍ୟାପି କୋଠା ଠିଆ ହୋଇଛି, କାମ ଚାଲିଛି । ସବୁ ଯେପରି କ ସଦାଶିବଙ୍କୁ ହିଁ ଉପହାସ କରି ତାଳି ମାରି ଉଠୁଛି—"ଆମେ ସବୁ ମାଡ଼ିବସିଛୁ । ମଜୁରିଆର ଏଠି ସ୍ଥାନ ନାହିଁ, ଫେରି ଯା—"

ଏଇ ସହରରେ ଥିଲା ତାର ବସାଘର ।

ବାଟରେ ଗଲେ ପୁରୁଣା ସ୍ମୃତି ଫେରି ଆସେ ।

ହେଇ ତ ସେ ନିମ୍ବଗଛ । ବସାଘର ଧାଡ଼ିଟିଏ ତାହାରି ତଳେ ଥିଲା । ଆଗମୁହଁ କିଛି ପରିବର୍ତ୍ତନ ହୋଇଛି । ହେଇ ସେ ଘର । ଦୁଆର ମୁହଁରେ ପହଞ୍ଚିଲା । ହୋମିପ୍ୟାଥି ଡାକ୍ତରଖାନା ଖୋଲିଛି । ଭିତରୁ ସମ୍ଭାଷଣ,—'ଆପଣ କାହାକୁ ଖୋଜୁଛନ୍ତି, ଆଜ୍ଞା ?"

"ନା, ଏମିତି ।"

ଏ ଘର ତାର ନୁହେଁ, ତାର ଅଜ୍ଞାତର ।

ଆର ଗଳିରେ ଆଉରି ଗୋଟିଏ ଘର, ସେଠି ସେ ଥିଲା ଚାରିବର୍ଷ । ଦୁଆରମୁହଁରେ ଠିଆହେଲେ ଭିତଠାଯାକ ସବୁ ମନେ ପଡ଼େ । ଆଉ ପହିଲି ଯୌବନର ଦୃଶ୍ୟ କିଛି ।

ପଡ଼ାଘର, ସେପାଟଖ ପଡ଼ିଶାଘର, ଜହ୍ନରାତି ହାର୍ମୋନିୟମ୍ ସହିତ ଗୋଟିଏ ଝିଅର ଗଳା ।

ଦୁଆରମୁହଁରେ ଠିଆ ହେଲା ।

ଭିତରୁ ଚହଲ ପଡ଼ିବ, ଦେହ ବଙ୍କେଇ ବଙ୍କେଇ ନାଚ କରି କରି ଦଉଡ଼ି ଆସିବ, ତାର ପୋଷା କୁକୁର 'ଭଲୁ' । ଭଲୁ ପେଡ଼ା ଖାଏ ।

"କାହାକୁ ଖୋଜୁଛନ୍ତି ?" ଅତି କର୍କଶଗଳାରେ ରୂଢ଼ ଭାବେ ଗର୍ଜିଉଠିଲେ ଜଣେ ମୋଟାସୋଟା ଭଦ୍ରଲୋକ । ସଦାଶିବ ଚମକି ପଡ଼ିଲା ।

"ସଦାଶିବ ବାବୁ ଏଠି ଥାଆନ୍ତି ?"

"ନା, ହେଇ ଆଗରେ ଦେଖନ୍ତୁ ?"

ମୁଣ୍ଡ ନୁଆଁଇ ଆଗକୁ ଚାଲିଲା । ଚେତା ପଶିଲା,— କାହାକୁ ଖୋଜୁଛି ବୋଲି କହିଥିଲି ? ନିଜକୁ ତ ! ଆଗରେ ନାହିଁ, ପଛରେ କେଉଁଠି । ପଛରୁ ମାଡ଼ି ଆସୁଛି ମଟରଗାଡ଼ି । କାନ୍ଥ-କରକୁ ଲେପ୍‌ଟି ଯାଉ ଯାଉ ମଟର ଚକର ଆଘାତ ଖାଇ ରାସ୍ତାର ଗୋଳପାଣି ପିଚକାରି ମାରିଦେଲା ତାହା ଉପରକୁ । ଇସ୍ ଦେହରୁ ଫାଳେ ଗଲା । ମଟରରେ ଧୋବ ଲୁଗା, ଧୋବ ପଞ୍ଜାବୀପିନ୍ଧା ଗୋଲ୍ ଗାଲ୍ ଭଦ୍ରଲୋକ । ସେ କଣ ଜାଣିଥିବେ ? କେବେ ନୁହେଁ । ହୁଏ ତ ତାଙ୍କ ବେଉସା ଚିନ୍ତାରେ ମଗ୍ନ । ମଟରର ଦାସ, ମଟର ଭିତରେ ଥିବା ମନୁଷ୍ୟ । ମଟରରେ କ୍ଷତଗ୍ରସ୍ତ ରାସ୍ତାର ପଦାତିକ । ଦୁହେଁ ଦୁହିଁଙ୍କୁ ଚିହ୍ନନ୍ତି ନାହିଁ । ମଟର ଚାଲିଲେ ।

ରାସ୍ତାରେ ଅସନା ପାଣି ଲୁଗାରେ ବାଜିବାରୁ ଭାବୁକପଣ ଉଭେଇ ଗଲା । ଏଇ ସହରରେ ଅନେକ ସ୍ଥାନରେ ଥିଲା ତାର ଘର । କେବଳ ଏ ସହରରେ କାହିଁକି, ଏ ଦୁନିଆରେ ଅନେକଠି ।

କେତେଟିଁ ତା ପାଇଁ ଜଳାଛୁ ଚୁଲ୍ଲୀ, କେତେଟି ବସି ସେ ଝାଳ ପୋଛୁଚ, ବିଶ୍ରାମ କରଛୁ, ବାହାର ପ୍ରାକୃତିକ ଆବୋଗ ନେଇ ନିଜର ଚିନ୍ତାକୁ, ନିଜର ଜୀବନକୁ ରୂପ ଦେଇଛୁ ।

ତା,ପରେ ତା ଯାଇଛୁ !

ଥରେ ମାଟି ଛୁଇଁଲାପରେ କେତେଥର କେତେଠୁ ସେ ନିଶ୍ଚିହ୍ନ ହୋଇଛୁ, ପୁଣି ନୂଆ ମାଟିରେ ପଲ୍ଲବ ଉଠିଛୁ, କେତେଥର ମରିଛୁ, ପୁଣି ବଞ୍ଚି ଉଠିଛୁ ।

ଶୋଚନା ନାହିଁ ।

ବୁଲି ବୁଲି ସଞ୍ଜରେ ଫେରିଲାବେଳକୁ ମେଘ ଦଳ ଦଳ ଆକାଶ, ଗୋଟାଏ ଦିନ ଶେଷ ହୋଇଛୁ । ଘର ମିଳିନାହିଁ ।

-୭-

ଗୁରଦିନ ସହରସାକ ଏମୁଣ୍ଡ ସେମୁଣ୍ଡ ପାନିଆରେ କୁଣ୍ଡେଇବାପରି ଶେଷ କରିସାରି ସଦାଶିବ ତାର କାର୍ଯ୍ୟରେ ଯୋଗ ଦେଲା, ଯୋଗଦେଲା କେବଳ କାଗଜରେ, ବସିବାକୁ ସ୍ଥାନ ନାହିଁ । ମହୁଫେଣା ପରି କାର୍ଯ୍ୟାଳୟ, ମହୁମାଛିଙ୍କ ପରି କର୍ମୀ । କେତେ ମାଛି ଉଡ଼ି ଆସନ୍ତି, କେତେ ଯାଆନ୍ତି ଉଡ଼ି— ଏମିତି ଆବହମାନ କାଳରୁ । ତାଙ୍କ ଭିତରେ କେଉଁ ମାଛି ଟିକିଏ ବଡ଼, ଟିକିଏ ମୋଟା, କିଏ ଟିକିଏ ସାନ, ଟିକିଏ ସରୁ । କାହାର ଘାଉଁ ଘାଉଁ ଟିକିଏ ବେଶି, କିଏ ଟିକିଏ କାମୁଡ଼ା, ଆଉ କେତେ—ସେମାନଙ୍କ ସମବେତ ସାନ ସ୍ୱର ଶୁଭେ କ୍ଷୀଣ କରୁଣ ଆଳାପ ପରି

ବହୁ ଆୟାସରେ ଯୋଗାଡ଼ କରି ପାରିଲା ସାତ ହାତର ଖଣ୍ଡେ ପିଣ୍ଡା, ବାବୁଆନର ଭେକ ରଖିବାକୁ ଖଣ୍ଡେ ଟେବୁଲ, ଖଣ୍ଡେ ଚଉକି, ସାମ୍ନାରେ ବିଖଣ୍ଡ ବେଞ୍ଚ୍ ।

ଚଉକରେ ବସି ଟେବୁଲରେ ହାତ ରଖି ଅଣ୍ଟା ସଳଖେଇ ବଡ଼ ବଡ଼ ଆଖି କରି ସଦାଶିବ ସାମ୍ନାକୁ ଚାହିଁଲା । ସେ କର୍ମଚାରୀ । ଏଠି ତାର ଆଧିପତ୍ୟ ।

ଚାରିଆଡ଼କୁ ନଜର କଲା । ଛେଳି-ଲଣ୍ଡି ପଡ଼ିଛି । କିଛି ଗୋବରର ଚିହ୍ନ । ଛେଳି ଗନ୍ଧ ପକ୍ଷାର ପ୍ରତିଷେଧକ କହନ୍ତି, ଗୋମୟ ଡିସିନ୍‌ଫେକ୍‌ଟାଣ୍ଟ । ଅନୁଭବ କଲା—ଏଠି ବି ସେ ଏକଚ୍ଛତ୍ର ନୁହେଁ !

କିଛି ସମୟ ପରେ କୁତୂହଳୀ ହୋଇ ଆସି ପହଞ୍ଚିଲେ ଗୋଟିଏ ଛେଳି ଓ ତାର ତିନୋଟି ଛୁଆ । ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ ମୁହାଁମୁହିଁ ।

-୨-

ସଦାଶିବ ଘର ପାଇଁ ଖଣ୍ଡିଏ ଆବେଦନ କରିଥିଲା, ତାର କାର୍ଯ୍ୟାଳୟରେ । ଉପରସ୍ଥ ଉତ୍ତର ଦେଇଥିଲେ – "ସେ ଦାୟିତ୍ୱ ଆମର ନୁହେଁ ।" ତା ପରେ ପୁଣି ବ୍ୟକ୍ତିଗତ ଉଦ୍ୟମ । ପରାମର୍ଶ ମିଳିଥିଲା—ବ୍ୟକ୍ତିଗତ ଉଦ୍ୟମରେ କମ୍ପାନୀ ବସେ, କୋଠା ତୋଳା ହୁଏ, ଚାଲେ ଆମଦାନୀ ରପ୍ତାନି ବେପାର । ତେବେ ଅସମ୍ଭବ କଣ ? ନ ମିଳିଲେ ଉଦ୍ୟମର ଅଭାବ, ଅଳସପଣ, କିହାତି ନ ହେଲେ ଭାଗ୍ୟର ଦୋଷ ।

ପଚାରିଲେ ପ୍ରତିଶ୍ରୁତି ମିଳେ, ବଡ ସହରର ଭଦ୍ରଲୋକ-ମାନେ ଯେପରି କ ସାହାଯ୍ୟ କରିବାକୁ ବ୍ୟାକୁଳ ସମସ୍ତେ । ପାଟିରେ ପାନ ଓ ହସ, ବ୍ୟବହାରରେ ଶିଷ୍ଟାଚାର, "ଆଜ୍ଞା ମୁଁ ନଜର ରଖିଲି । ଆପଣଙ୍କ ପାଇଁ ମିଳିବ ନାହିଁ ଖଣ୍ଡେ ଘର ?

ଆରଦିନ ଦେଖାହେଲେ ପୁଣି ନୂଆ ହୋଇ ପ୍ରସ୍ତାବ ।

"କଣ ବୁଝିଲେ ଆଜ୍ଞା ?"

"କେଉଁ କଥା ?"

"ଘର ଖଣ୍ଡେ ବୁଝି ଦେଉଥିଲେ ପରା ?"

"ଓ, ସେ କଥା ! ବୁଝୁ ଛ ଆଜ୍ଞା । ପାଇଲେ କହିବ ଯେ—" ପ୍ରତିଶ୍ରୁତି ମିଳେ, ଘର ମିଳେ ନାହିଁ ।

ରତ୍ନାକର ସହିଯାଏ ।

ପ୍ରତ୍ୟହ ସଞ୍ଜବୁଡ଼େ ଦମୟନ୍ତୀ ପଚ୍ଛରେ,—"ଘର କଥା କ'ଣ ହେଲା ?" ନୂଆ ଶିଶୁ ପ୍ରକାଶ ପାଇଁ ଚହଲ ପକାଏ, ତାର ଘର ଦରକାର । ଏହିପରି ଦିନେ, ଉଦ୍ଧାର କଲା ଦମୟନ୍ତୀ ।

ତାର ପ୍ରସୂତି କାର୍ଯ୍ୟ ପାଇଁ ଦରଖାସ୍ତ କରି ଡାକ୍ତରଖାନାରେ ମିଳିଗଲା ଖଣ୍ଡିଏ ବଖୁରିକିଆ ବସା । ସଦାଶିବ ସଦଳବଳେ ସେଠିକି ଉଠିଗଲା ।

ଶାର୍ଦ୍ଦୂଳ-ବିକ୍ରୀଡ଼ିତ ପରମ ଆନନ୍ଦରେ ବସା ସାମ୍ନାର ଘାସ ଅଗ୍ରକରେ ନୃତ୍ୟ ଆରମ୍ଭ କରିଦେଲା,—"ଆମ ଘର, ଆମ ଘର ।" ଅନୁଷ୍ଟୁପ୍, ମନ୍ଦାକ୍ରାନ୍ତା ଓ ଗାୟତ୍ରୀ ସେହି ଘାସରେ ଡେଇଁ ଲାଗିଲେ । ସୁନ୍ଦର ଘାସ, ସୁନ୍ଦର ନୁଆଁଣିଆ ଖରା ।

ପିଣ୍ଡାରୁ ଦମୟନ୍ତୀ ହସୁଛି ।

ସଦାଶିବ ମେଘକୁ ଅନାଇଛି; ଭାବୁଛି ଏଥର ଯେ ଜନ୍ମ ହେବ, କ'ଣ ହେବ ତା ନାଁ ?

ସେ ପାଖ ଖଞ୍ଜାର କବାଟ ଖୋଲିଲା, ବାହାରିଗଲା ଗୋଟାଏ ମୃତ୍ୟୁର ପଟୁଆର । ସଦାଶିବ ଚମକି ପଡ଼ି ପାଟିକଲା— "ହେ ପିଲେ, ଭିତରକୁ ଚାଲ, ଭିତରକୁ ଚାଲ ।"

———



## ଅଧ୍ୟାପକ ବ୍ରଜକିଶୋର ରାୟ

ଗୋଠବାହୁଡ଼ା ବେଳ ।

କଅାଗୋହ୍ଵାଣ୍ଟ ଡେଇଁ ଦଫାଦାରବାବୁ ଭଜନ ପଧାନ ଘର ପିଣ୍ଡା ଉପରକୁ ଉଠିଲେ । ଏବେ ସେ ଥାନାରୁ ଫେରୁଛନ୍ତି । ଦଶ ଦଶଟା ମକଦ୍ଦମାର ଫନ୍ଦ ଓ ମୀମାଂସା କାନ୍ଧରେ ବୁହାଇ ସେ ସବୁବେଳେ ଯାତାୟାତ କରନ୍ତି; ତେଣୁ ତାଙ୍କର ମେରୁଦଣ୍ଡ ଆଗକୁ ଝୁଙ୍କି ପଡ଼ୁଛି ।

ପାଉଁଶଗୁଣ୍ଡିରେ ଦଳା ହୋଇ ସରକାରୀ କୋଟ୍‌ର ବୋତାମଗୁଡ଼ାକ ଚକ୍ ଚକ୍ ଦେଖା ଯାଉଛି । ହାତରେ ବଡ଼ାଏ କାଗଜ । କାଗଜ ଉପର ମଲାଟ ବୋର୍ଡ଼ ଖଣ୍ଡିକ ଟିପଚିହ୍ନ କାଳିରେ କଳା ପଡ଼ିଛି । ଗୋଟାଏ ସୂତା ଅହେତୁକ ଭାବରେ କାଗଜ ଉପରେ ଲମ୍ବି ଆସିଛି ।

ସରସୀ ତୁଳସୀ-ଦେବୀ ମୂଳରେ ଛୁଅଁକନା ବୁଲେଇ ଆଣୁଥିଲି । ଦେଖିଲି, ଦଫାଦାରବାବୁ ପିଣ୍ଡା ଉପରକୁ ଉଠୁଛନ୍ତି । ଓଢ଼ଣାଟି ଧୀରେ ଟାଣି ଆଣି ମସିଣା ଖଣ୍ଡିଏ ପିଣ୍ଡା ଉପରେ ପାରିଦେଲି । ଦଫାଦାରବାବୁ ବସିପଡ଼ିଲେ ।

ସରସୀ ଦଫାଦାରବାବୁଙ୍କର ଧରମ ଝିଅ । ଥାନାଫେରନ୍ତା ଦଫାଦରବାବୁ ସରସୀକୁ ଏହିପରି ପ୍ରାୟ ସଙ୍ଖୋଳ ଯାଆନ୍ତି; ଏଣୁ ତେଣୁ ଦି' କଥା ପଚାରନ୍ତି । ପଚାରିବା ଭିତରେ ନିଜ ସ୍ୱାର୍ଥର ପରିଚୟ ଥାଏ । ସେଇତକ କଥାବାର୍ତ୍ତାରେ ସରସୀର ବାରି ବାଇ-ଗଣଠାରୁ ଆରମ୍ଭ କରି ଉଜଳା ଗାଈର କ୍ଷୀର ବା ପଦ୍ମାର ଲହୁଣୀ ପର୍ଯ୍ୟନ୍ତ—ସବୁଥିରେ ଦଫାଦାରବାବୁଙ୍କର ଲାଲସା ରହିଥାଏ ।

ଭଜନ କୃଷି କରେ, ଗୋଧନ ବଢ଼ାଏ; ଆଉ ସରସୀ କୃଷି-ଲକ୍ଷ୍ମୀଙ୍କୁ ଆଦର କରେ, ପୂଜା କରେ ପ୍ରତି ଗୁରୁବାରରେ । ଶ୍ରେଷ୍ଠ ଶ୍ରେଷ୍ଠ ପାଦ କେତୋଟି ମୁରୁଜରେ ଆଙ୍କି ଈଶାନକୋଣରେ ତାହା ସେ ବନ୍ଦାପନା କରେ । ଗିରିବର କୁଳ ଭିତରେ ଏକ ଆଡେ ସ୍ୱାମୀ, ଅନ୍ୟ ଆଡ଼େ ଗୋମାତାର ସେବାରେ ସରସୀର ଅନ୍ତର ପୁଲକିତ ହୁଏ । ତାର ନେଇ ସମ୍ପତ୍ତି—ଉଜଳା, ପଦ୍ମା, ମଙ୍ଗଳୀ; ଆଉ ଜଗନ୍ନାଥ ଓ ବଳଭଦ୍ର ବୋଲି ଦୁଇମୂର୍ତ୍ତି ବଳଦ ।

ଉଜଳା ପହ୍ନାରେ ଆଙ୍ଗୁଠି ଖସାଇ ସରସୀ ଯେତେବେଳେ କୋଳ ଉପର ଭାଣ୍ଡିକୁ ଭରି ଆଣେ, ସେତେବେଳେ ସୂର୍ଯ୍ୟ-ରଥ ଆକାଶର ନୀଳିମ ଚକ୍ରବାଳକୁ ଉଦ୍ଭାସିତ କରି ବାହାରି ଆସୁଥାଏ । ନିତି ଦିନର ଏହି ଲୀଳା ଯେମିତି ସରସୀର ପ୍ରାଣ ପରିପୂର୍ଣ୍ଣ ରହିଥାଏ ସତ; ମାତ୍ର ନାରୀହୃଦୟର ନିଭୃତସ୍ଥଳୀର ଯେ ବ୍ୟଥା ଟିକକ ସେ ଅତି ସଂଗୋପନରେ ଧରି ରଖିଥାଏ, ତାହାର ସମ୍ବାଦ କମିପକ୍ଷେ ଭଜନ ରଖିପାରେ ନି, କି ଉଜଳା ପଦ୍ମା କେହି ବୁଝିପାରନ୍ତି ନାହିଁ ।

ଭାଣ୍ଡି ପୂରି ଆସେ । ସ୍ୱଚ୍ଛ ଶୁଭ୍ର କ୍ଷୀରଧାର । ଉଜଳା ଝିଅ ବଉଳର ଦୁଧ ଫେଣଲଗା ମୁହଁ ସରସୀର ପିଠି, ହାତ, ବାହୁଉପରେ ବୁଲିଆସେ । ବଉଳର ଏ ଆନନ୍ଦ-ସ୍ପର୍ଶ ସରସୀ ସହିନିଏ । ସାମାନ୍ୟ

ବାହୁଘର ସ୍ପର୍ଶ ଭିତରେ, ଆଦର ଭିତରେ ସରସୀ ଯାହା ଉପ-ଭୋଗ କରେ, ତାହାଠାରୁ ବେଶି ସେ ଅନୁଭବ କରେ ତାହାର ଅନୁକ୍ଷଣ ଅଭାବ ।

ଗାଁ ସମାଜ ଘରେ ସରସୀ ଶୁଣିଛି, ଯଶୋଦା ବନମାଳୀଙ୍କର ଗୋପଲୀଳା କାହାଣୀ । ଗାଁର ହରିଜନ ଯାତ୍ରାଦଳର ରଙ୍ଗସଭା ସୁଆଙ୍ଗରେ ସେ ଚିହ୍ନି ପାରିଛି, ବାଳଗୋପାଳ କୃଷ୍ଣଙ୍କ ପାଇଁ ଯଶୋ-ମତୀର ସ୍ନେହବତ୍ସଳ ମନ । ଗୋଧନ ପଛରେ କାହ୍ନୁର ରଙ୍ଗଚୂଲ ଦଣ୍ଡେ ନ ଦେଖିଲେ ଯଶୋଦାଙ୍କର ହୃଦଫଟା କାନ୍ଦ—କ୍ଷୀରହଣ୍ଡି ଭାଙ୍ଗି କୃଷ୍ଣର କାନ୍ଦୁ ଆଉଜା ସଶଙ୍କ ମୂର୍ତ୍ତି—ସବୁ ସରସୀ ଦେଖେ, ବୁଝେ । ଯେତିକି ଦେଖେ, ଯେତିକି ବୁଝେ, ସେତିକି ଉଜଳା କ୍ଷୀରର ପୂର୍ଣ୍ଣଭାଣ୍ଡ ତାକୁ ଅପୂର୍ଣ୍ଣ ଜଣାଯାଏ । ଛୋଟ ଛୋଟ ଦୁଇଟି ପାଦରେ ଠୁକୁ ଠୁକୁ ଚାଲି ଯେବେ ଗାଲରେ ଗାଲେ ହସ ଫୁଟାଇ ଯେଉଁ ହୃଦ-ଧନଟି, ଉଜଳାର କ୍ଷୀରଭାଣ୍ଡକୁ ଆକ୍ରମଣ କରୁଥାନ୍ତା, ତାହାର ସ୍ୱପ୍ନ ହିଁ ସରସୀ କେବଳ ଦେଖି ଚାଲିଛି ।

'—ଭଉଣୀ କଅଣ ହାଲକୁ ଯାଇଛି ?' ଦଫାଦାରବାବୁ ହସି ହସି ଆରମ୍ଭ କଲେ ।

'ହଁ ଯାଆନ୍ତେ, ଏଇନାକେ ଫେରୁଥିବେ ।'

ଦାଣ୍ଡଘର କବାଟ ଆଡୁଆଳରୁ ସରସୀ ଅଧାଲୁଚି ଅଧାଦେଖା ଭାବରେ ଦଫାଦାରବାବୁଙ୍କୁ ଅଭ୍ୟର୍ଥନା କରିଛି । ଉଜଳାର ଛେନା, ଆଖୁ କ୍ଷେତର ନୂଆଗୁଡ଼—ତା ସାଥିକୁ ଦି'ଟା ହୁଡ଼ୁମ ।

ଦଫାଦାରବାବୁ ଭୋଜନ ସାରି ସରସୀକୁ ଶୁଣେଇ କହିଲେ—'ସେଠି, କଟକ ସହରରେ ଗାଈ ଗୋରୁ ପ୍ରଦର୍ଶନୀ ହେଉଛି । ତୋ

ଉଜଳା, ପତମାଙ୍କୁ ଦେଖିଲେ ତ ଆଖି ଖୋସି ହୋଇଯାଏ । ତୁ ତାଙ୍କୁ ଏତେ ହେପାଜତରେ ରଖିଛୁ ଯେ, ମାଛି ଖସି ପଡ଼ିବ । ଭଜମାକୁ କହିବୁ—ଉଜଳା, ପତମା ଆଉ ବଂଉଳାକୁ ଯେନ ସେ କଠେକ ଯାଉ । ଗାଈ ପିଛୁକେ ପଚିଶ ଟଙ୍କା ପୁରସ୍କାର ।"

ସରସୀ ବାଧାଦେଇ କହିଲା—'ପଚିଶ ଟଙ୍କା କେତେ ମ ? କୋଡ଼ି କୋଡ଼ି ହୋଇ ସାଆନ୍ତେ କେତେ ହେବ କୁହ !'

'—ଢ଼' କୋଡ଼ି ପୁଣି ଦଶଟଙ୍କା ।'

'—ଏଁ ଏତେ ଟଙ୍କା ମିଳିବ ?

'—ହଁ, ଥାନା ବାବୁ ଗାଁରେ ଗାଁରେ ଏକଥା ଲୋକଙ୍କୁ ବୁଝେଇବାକୁ ମତେ କହିଛନ୍ତି । ସେଠାରେ ଗାଈ ଗୋରୁ ମଣିଷଙ୍କ ପାଇଁ ଖାଇବା ପିଇବାର ସୁବିଧା ଅଛି । ବାଟରେ ଯଦି ଭଜମାକୁ ଦେଖିବ, ତାକୁ ବୁଝେଇଦେବ ।'

ସରସୀ କହିଲା—'ସାଆନ୍ତେ, ଢ଼'ଦିନ ନକମା ହେଲେ ତ ପୁଣି ଏ ଯିବେ ! କେତେଦିନେ ଯିନା ଟଙ୍କା ମିଳିବ, ଆଗ ତ ପୁଣି ବାଟ ଖରଚ ଲୋଡ଼ା ।'

ପଞ୍ଚୁଆ କାଳିଆକୁ ଯେନ କେତେବେଳୁ ଦଫାଦାର କଥା ଶୁଣୁଛି, ଏକଥା କେହି ଜାଣନ୍ତି ନାହିଁ । ଦେଶୀ କୁକୁର କାଳିଆ । 'ଧ' ବୋଲି ଧରେଇଲେ କାଳିଆ ଗାଈ ବଳଦଙ୍କ ଗଳା ବି ଝୁଣି-ଦେବ । ପଞ୍ଚୁଆ ଓ କାଳିଆ ଭିତରେ ଏ ଅଭେଦ ପ୍ରୀତି ଗାଁ ଲୋକେ ଜାଣନ୍ତି । କାଳିଆ ପାଇଁ ପଞ୍ଚୁଆକୁ ଏଥିପାଇଁ ସମ୍ମାନ ବି କରନ୍ତି ।

'—କରେ ପଞ୍ଚୁ ! କାଳିଆକୁ ଯେମିତି କଷ୍ଟ ହେବ ନାହିଁ, ଏ ଯେମିତି ନାଗଣା କୁକୁର, କେଜାଣି କେତେ କଣ୍ଟା ମିଳି ଯାଇପାରେ ।'

'—ଏ ଦେଶୀଟା କଉଣ କାମ ଭୁଲେଇ ପାରିବ ?' କହି ପଞ୍ଚୁଆ କାଳିଆ ମୁଣ୍ଡରେ ହାତ ବୁଲେଇ ଆଣିଲା । ପ୍ରଭୁର ସ୍ନେହ କୁକୁର ବୁଝେ । ଲାଞ୍ଜ ପିଟି ଗୁମୁ ଗୋଡ଼ରେ ମାଟି ଖୋଳି କାଳିଆ ଜଣେଇ ଦେଲା ଯେ, ସେ ସବୁ କାମ ଭୁଲେଇ ପାରିବ ।

ପୁରୀସହର ଜାଗାଘରେ ତାଲିମ୍ ହୋଇଛି କଣ୍ଟ ପୁଞ୍ଚୁଆ । ତାର କୈଶୋର କାଳ ପୁରୀରେ ଗୋଟାଏ ବିଖ୍ୟାତ ଆଖଡ଼ା ଘରେ କଟିଯାଇଛି । ସାଧନା ଓ ସ୍ମୃତି ଚିହ୍ନ ପାଇଁ ଏବେ ବି ସେ କପାଳ ଶିଖରୁ ନାସାଗ୍ର ପର୍ଯ୍ୟନ୍ତ ସିନ୍ଦୂରକଳି ମାରେ । କାନ୍ଧ ଉପରେ ଗାମୁ-ଛାଟା ତା'ର ପ୍ରତି ପଦକ୍ଷେପରେ ଉଠେ, ଆଉ ପଡ଼େ । ଏଇଟା ଏଡ଼େ ଅଭ୍ୟାସରେ ଶେଷକୁ ଆସିଗଲା ଯେ, ପାଦତାଳ ଗୁଡ଼ କଥାତାଳରେ ବି ତାହା ଏବେ କଣ୍ଟ କାନ୍ଧ ଉପରେ ନାଚିବାକୁ ଆରମ୍ଭ କରିଛି ।

ଯେଉଁ ବୋଦାକୁ ଧୋବା ପ'ରେ ନି, କଣ୍ଟ ତାହା ବେକରେ ଛୁରୀ ଦିଏ । ଏ ଅସାଧାରଣ ସାଧନ ସେହି ପୁରୀ ରହଣି ଭିତରେ ସେ ଆୟତ୍ତ କରିଛି । ଏ ସବୁର କର୍ମକ୍ଷେତ୍ର ନିରୂପିତ ହୋଇ ରହିଛି; ତେଣୁ କାହାର ଦରକାର ହେଲେ ଜଣାଶୁଣା ଦୁଇଟଙ୍କା ପାଉଣାରେ କଣ୍ଟ ଜୀବବଧ କରିଦିଏ । ସେଠାରୁ ଫେରିଆସି ଶିବ ଦେବାଳୟ ଭିତରେ କଣ୍ଟ ସନ୍ଧ୍ୟା ଆଳତି ବୁଲାଏ । ଏ ବ୍ୟବସାୟରେ ତାକୁ ଦିନେ କ୍ଷତି ସହିବାକୁ ପଡ଼େନି । କାରଣ ତାହାର ଉତ୍ସାହ-ଦାତା ଓ ପୃଷ୍ଠପୋଷକ, ସବୁ କଥାରେ—ହେତୁକ ହେଉ ବା ଅହେତୁକ ହେଉ, ଯେଉଁମାନେ ଆଗଭର ସେହି ସ୍କୁଲ୍ ଓ କଲେଜ ଛାତ୍ର ।

କଣ୍ଟ ପଞ୍ଝୁଆ ପଛରେ ଛୁଡ଼ାହୋଇ 'କଣ କରେ' ବୋଲି ପଗ୍ଚରିଲ୍ । ଦଫାଦରବାବୁ ତାକୁ ଦେଖି କହିଲେ, 'ମାଲିକେ, ମେଣ୍ଢାଟା ଥରେ ଚାଲି ପକାଉ ।'

—'ମହାରାଜେ; ଏ ବା କି କଥା, ବସିବା ହେଉ' କହି କଣ୍ଟ ବାହାଟ୍ଟୋଠ ମାରି ତାର ପ୍ରିୟ ମେଣ୍ଢାଟିକୁ ଆହ୍ୱାନ କଲି । ଏ ଦୃଶ୍ୟ ଗାଁଲୋକଙ୍କର ପୁରୁଣା ହେଲେ ବି, ସବୁଥର ଏଥରେ ନୂତନତା-ପ୍ରକଟେ, ତାର କାରଣ କଣ୍ଟର କହିବା ଗ୍ଭଙ୍ଗୀରେ ମାଲ-ଚନ୍ଦମଣ୍ଡଳର ଭାଷା ଫୁଟେ ବୋଲି ।

କଣ୍ଟ ମେଣ୍ଢାଟିଏ ପାଳିଛି । ଗର୍ଦ୍ଧକାୟୀ ମେଣ୍ଢା । କେଶରୀ କେଶର ଭଳି ତାର ଗଳଦେଶର କେଶଗୁଚ୍ଛ ଅତି ସାନ୍ଦ୍ର । ଶିଙ୍ଗ ବାଙ୍କିଯାଇ ଶିଖ୍‌ଲୋକର ଶ୍ମଶ୍ରୁ ବନ୍ଧନ ପରିପାଟି ଭଳି ମୁହଁ ଉପରେ ତାହା ଲାଖି ରହିଛି । କଣ୍ଟ ଏହି ଜୀବଟିକୁ ପାଳିବା ପାଇଁ ଯାହା ଖର୍ଚ୍ଚ କରେ, ସେଥିରେ ସେ ଦୁଇ ପ୍ରାଣୀ କୁଟୁମ୍ବ ସ୍ୱଚ୍ଛନ୍ଦରେ ପୋଷି-ପାରନ୍ତା । କଂସେଇ ମାଧବ ମିଆଁ ଗ୍ଭଳିଶ ଟଙ୍କା ହାଙ୍କିଥିଲା; ତଥାପି କଣ୍ଟ ଦେଇ ନାହିଁ ।

ଦୁଇଦିନ ପରେ ସିନ୍ଦୂର ଫାଟିଲାବେଳକୁ ସେହି ଗାଁଆଁର ନଈ ବନ୍ଧ ଉପରେ ଲୋକେ ଦେଖିଲେ, କଣ୍ଟ ଗ୍ଭଲିଛି ମେଣ୍ଢାକୁ ସାଙ୍ଗରେ ଧରି, ତା' ପଛକୁ ପଞ୍ଝୁଆ ଟାଣୁଛି କାଳିଆକୁ, ସବା-ଶେଷରେ ଭଜନ ଗ୍ଭଲିଛି—ସାଙ୍ଗରେ ଉଜଳା ଓ ତାର ଝିଅ ବଉଳି ।

କଟକର ଗୋକୃଷି-ପ୍ରଦର୍ଶନୀର ବରାଟ ପଡ଼ିଆ । ସହରର ଛାତି ଉପରେ ପଲ୍ଲୀର ଗୋଧନ, ପଲ୍ଲୀର କୃଷିଦ୍ରବ୍ୟ, ପଲ୍ଲୀର ସରଳ ମଳିମୁଣ୍ଡିଆ କୃଷକର ଉପସ୍ଥାନ ।

ଗହଳ ଭିତରେ ପଞ୍ଚୁ, କଣ୍ଟ ଓ ଭଜନ ଯେଝାର ଜନ୍ତୁକୁ ଠିଆ କରାଇ ଧାରୁଛନ୍ତି; ଏଠି କଅଣ ହେଉଛି ? ମଟରଚଲା ଶବ୍ଦରେ ଚମକ କଣ୍ଟର ମେଣ୍ଢା ଦୁ'ଥର ପଘା ଛିଣ୍ଡେଇ ପଳେଇଥିଲା । ଅଠର କୋଶ ବାଟ ଚାଲି ଆସି ଉଜଳା ଆଉ ଛିଡ଼ା ହୋଇ ପାରୁ ନା । ତାର ଦୁଇ ଆଖିରୁ ଦୁଇ ଧାର ଲୁହ ବାହାରି ଆସିଛି । ଭଜନ କେତେ ବାଟ ବଉଳକୁ କାନ୍ଧରେ ବୁହାଇ ଆଣିଲା, ଶେଷକୁ ଆଉ ପାରିଲା ନାହିଁ । ଚାରିମାସର କୁଆ ବାଛୁରୀ ଅକାତ ହୋଇ ପଡ଼ିଗଲାଣି । ପିଲାଟି ଦିନୁ ଭଜନ ବଉଳକୁ ମୁଗଚୂନ ଖୁଆଇବା ଶିଖାଇଛି; ଏଠି ନଡ଼ାକୁଟା ଛଡ଼ା ଆଉ କିଛି ମିଳୁନ । ଜଣେ ବାବୁଙ୍କୁ ସେ ଏକଥା କହିଥିଲା । ସେ ବାବୁ କହିଲେ, ଆଉ ଜଣେ ବାବୁଙ୍କୁ କହିବାକୁ । ସେ ବାବୁ ପୁଣି କହିଲେ, ଅନ୍ୟ ଜଣେ ବାବୁଙ୍କୁ କହିବାକୁ । ଏତେ ବାବୁଙ୍କୁ କହିବାକୁ ଭଜନର ଆଉ ସମୟ ନ ଥିଲା ।

ହଠାତ୍ ଗୋଳ ଉଠିଲା "ମନ୍ତ୍ରୀ ମଟର", "ସାହେବ ମଟର", "ହାକମ ମଟର ।" ହଠାତ୍ ଗୋଳ ହୋଇଯିବାରୁ କାଳିଆର ମିଂଜାସ ତାତିଗଲା; ନଇଲେ ଏତେବେଳଯାଏ କୁକୁଡ଼ା ବଖରା ଆଡ଼କୁ ଅପଲକ ଆଖିରେ ସେ ଚାହିଁ ରହିଥିଲା । ସେତିକରେ ତାର ଯାହା ଶାନ୍ତ ଥିଲା, ତାହା ନଷ୍ଟ ହୋଇଯିବାରୁ ସେ ଭୁକିବାକୁ ଆରମ୍ଭ କରିଦେଇଛି ।

ସେଦିନ ପଡ଼ିଆରେ ସଭା ହେଲା । ପେଟ ଦ' ଦଉଡ଼ି ହୋଇଯାଉ- ଥିଲେ ବି ପଞ୍ଚୁ, କଣ୍ଟ ଆଉ ଭଜନ ସଭା ଦେଖିଥାନ୍ତି । ଦେଖିବା ମିଛ, ଶୁଣୁଥାନ୍ତି ଯାହା । ମନ୍ତ୍ରୀବୋଲି କଅଣ ପଦାର୍ଥ, ସେ ଦେଖିଲେ ନାହିଁ । ଡାକବାଜାଯନ୍ତ୍ରରେ ସେ କୁହାଟ ଶୁଣିଲେ—'ହଲଣ୍ଡ

ଡେନମାର୍କରେ ଗାଈଗୋରୁଙ୍କୁ ଯେପରି ଖାଦ୍ୟ ଦିଆଯାଏ, ଯେପରି ଭଲ ଅବସ୍ଥାରେ ରଖାଯାଏ, ଆପଣମାନେ ସେହିଭଳି ଖାଦ୍ୟ ଓ ଅବସ୍ଥାରେ ନିଜ ନିଜର ଗୋଧନ ପ୍ରତିପାଳନ କରନ୍ତୁ । ଏ ବିଷୟରେ ଅନେକ ବହି ଲେଖାଯାଇଛି, ତାହା ପଢ଼ନ୍ତୁ । ଏଠାରେ ଗୁହାଳ କି ଆଦର୍ଶ ଭାବରେ ତିଆରି ହେବା ଉଚିତ, ସେ ବିଷୟରେ ଜଣେ ଡେନମାର୍କରୁ ଟ୍ରେନିଂ ପାଇ ଆସିଥିବା କୃଷି ବିଭାଗର ଅଫିସର ବକ୍ତୃତା ଦେବେ । କୁକୁଡ଼ା କିପରି ବ୍ୟବସାୟସୂତ୍ରରେ ପାଳିବାକୁ ହେବ, ତାହା ବି ଜଣେ ବିଶେଷଜ୍ଞ ବୁଝାଇ ଦେବେ ।' ଶେଷରେ ଯନ୍ତ୍ରରୁ ବାହାରିଲା—

"ଏ ଆୟୋଜନଟିକୁ ସାଫଲ୍ୟମଣ୍ଡିତ କରିଥିବାରୁ ମାନ୍ୟବର ମନ୍ତ୍ରୀ ମହୋଦୟ କୃଷିବିଭାଗକୁ ଧନ୍ୟବାଦ ଦେଉଛନ୍ତି ଓ କର୍ମଚାରୀମାନଙ୍କୁ ଉତ୍ସାହିତ କରିବା ପାଇଁ ଏକଶତ ଟଙ୍କା ଦାନ କରୁଛନ୍ତି ।"

ସଭା ଶେଷ । ଅଠର କୋଶ ବାଟରୁ ଆସିଥିବା ତିନିଟା ଲୋକ ଏହି କଥା ଶୁଣିଲେ । ଆଉ ଟିକିକ ପରେ ପୁଣି ଶୁଣାଗଲା, ଏହିମାନେ ପୁରସ୍କାର ପାଇଛନ୍ତି, ପ୍ରତ୍ୟେକ ପଚିଶ ଟଙ୍କା ।

ଭଲ ଦୁଧିଆଳୀଗାଈ ପାଇଁ ମହନ୍ତ ମହାରାଜାଙ୍କର ପାଟଗାଈ । ଭଲ ବିଲାତିକୁକୁର ପାଇଁ ଡେପୁଟି ମାଜିଷ୍ଟ୍ରେଟ୍ ଭଟ୍ଟାଚାର୍ଯ୍ୟଙ୍କର ଲିଲି କୁକୁର ।

ଭଲ ମେଣ୍ଢା ପାଇଁ ବିଖ୍ୟାତ ବ୍ୟବସାୟୀ ଓ କାରପଟ୍‌ଦାର ଆବୁ ହୋସେନଙ୍କର ମେଷ ପ୍ୟାରୀ ମେଣ୍ଢୀ ।

ଭଲ ଛେଳି ପାଇଁ······

ପଞ୍ଚୁ ଅନେଇଲା ଭଜନ ଆଡ଼େ, ଭଜନ ଚାହିଁଲା ପଞ୍ଚୁ ଆଡ଼େ । କଣ୍ଠ ଚାହିଁଛି ଆଉ ଜଣକୁ । ସେ ଆଉ କେହି ନୁହେଁ, କଟକର କଂସେଇ ସମ୍ରାଟ ସରଫ୍ ମିଆଁ । ବ୍ୟବସାୟୀ ସେ । ଦେଖିଲା, ଏହି ପଡ଼ିଆରୁ ସେ କିଛି ମାଲ୍ ଯଦି ଯୋଗାଡ଼ କରିପାରେ, ତେବେ ଶସ୍ତା ଓ ସୁବିଧାରେ ସେ ପାଇଯିବ ।

ଅଣ୍ଟାରେ ତିନିଜଣଙ୍କର ପଇସା ନାହିଁ । ଅଠର କୋଶ ଫେରନ୍ତ ବାଟକୁ ଚାହିଁଦେଲେ ତିନିଜଣଙ୍କର ତାଲୁକ ଶୁଖିଯାଉଛି । ସରସୀ ବାରଅଣା ଅଡ଼େଇ ପଇସା ଦେଇଥିଲା । ବାଟରେ କୁଣ୍ଡା, ଛଣ, କଞ୍ଚାଚୁଡ଼ା କିଣାରେ ସେତକ ସରିଯାଇଛି । କଣ୍ଠ ଟିକିଏ ଅଫିମ ଖାଏ; ବାକି ଯାହା ଥିଲା, ସେତକ ଅଫିମରେ ସରିଛି ।

କାଳିଆ କୁକୁର ପଣ୍ୟ ନୁହେଁ; ତେଣୁ ପଞ୍ଚୁ ସେ ବିଷୟରେ ନିଶ୍ଚିନ୍ତ । ଉଜଳା, ବଉଳି ମାଆ ଝିଅ । ଗୋଟିଏ କଥାରେ ଭଜନର ସଂସାର । ଶେଷରେ ରହିଲା କଣ୍ଠର ମେଣ୍ଢୀ । ଏହାରି ଉପରେ ଆଖି ପକେଇଛି ସରଫ୍ ।

ଗାଁ ସାଥୀ ଦୁଇଜଣ ଓ ନିଜର କ୍ଷୁଧାର ଦାବଦାହ ସମ୍ଭାଳିବାକୁ ଯାଇ କଣ୍ଠ ମେଣ୍ଢୀକୁ ଛାଡ଼ିଦେଲା ପାଞ୍ଚ ଟଙ୍କାରେ ।

ଫେରନ୍ତା ବାଟ । ମୁହଁରେ କଥା ନାହିଁ । ବଉଳର ଅବସ୍ଥା ବିଗିଡ଼ିଯାଇଛି । ଭଜନ କାନ୍ଧେଇ କାନ୍ଧେଇ ତା କାନ୍ଧ ପାଚିଗଲାଣି । ବଉଳର ପେଟ ଫୁଲି ଯାଇଛି ଗାଁ ଗାଁ କରୁଛି ରକ୍ତ ବାନ୍ତି ।

ଉଜଳାର ପଛ ଖୁରା ଖଲି ଧରିଛି । ଗଲାବେଳକୁ ଯେଉଁ ଦ'ଧାର ଲୁହ ସେ ବୁହାଇ ଚାଲିଥିଲା, ସେହି ଦୁଇଧାର ଲୁହ ବହି ଚାଲିଛି ।

କାଳିଆ ସୁବିଧା ପାଇଲେ ବଉଳର ମୁମୂର୍ଷୁ ଦେହକୁ ଶୁଙ୍ଘି ଦେଉଛି । କାନ ପାଖରେ ମୁହଁ ଗୁଞ୍ଜି ସେ ଦଣ୍ଡେ ରହି ଯାଉଛି ।

କେତେବେଳକୁ ଭଜନ ବଉଳକୁ କାନ୍ଧରୁ ଖସେଇ କହିଲା—
'ପଞ୍ଚୁ, ସରିଗଲା !'

କଣ୍ଠ ଆଉ ପଞ୍ଚୁ ଦେଖିଲେ—ହଁ ସରିଯାଇଛି । ବଉଳର ମୁହଁରୁ ଯେଉଁ ଝଲକ ରକ୍ତ ବହି ଯାଇଛି, ତାହା ସହିତ ବଉଳର ପ୍ରାଣ ଖସିଯାଇଛି ।

ଆକାଶ ତାରକିତ ଥିଲା । ସେହି ଆଡ଼କୁ ଚାହିଁ ଭଜନ କହିଲା—'କଣ୍ଠ ମହାପ୍ରଭୁ, ସର କଅଣ ମତେ କହିବ ? ସେ ବଞ୍ଚିବ ଠିକ ? ମୁଣ୍ଡ ତ ପିଟିଦେବ, ମୁଁ କଅଣ କରିବ ? ଭଗବାନ କୋଳରେ କୁଆଁ ଶୁଣେଇ ନାହାନ୍ତି, ବଉଳ ତାର ଝିଅ ଥେଲା ।'

ସେଇଠି କଣ୍ଠ ଶେଷଥରକ ପାଇଁ କପାଳ ଶିଖରୁ ସିନ୍ଦୂର କାଢ଼ି ପୋଛିଦେଇ କହିଲା—

"ଦେ ଭାଇ, ବଉଳଟାକୁ ସଡ଼କ ତଳକୁ ଗଡ଼େଇ ଦିଏଁ । ଆମେ ମଳାମୁଣ୍ଡିଆ ।"

କାଳିଆ ପଛେ ପଛେ ଗଲା । ବଉଳର ଶବ ଯେଉଁଠି ପଡ଼ିଲା; ସେଇଠି ସେ ଦଣ୍ଡେ ଛିଡ଼ା ହୋଇ ରହିଗଲା ।

---

# ସାରୀପୁତ୍ର

## ଶ୍ରୀ ସୁରେନ୍ଦ୍ର ମହାନ୍ତି

ସାରିପୁତ୍ର ଫେରି ଆସୁଛି ଆଜ । ଭିକ୍ଷୁ ସାରିପୁତ୍ର ନୁହେଁ, ବୁଦ୍ଧଙ୍କର ଶିଷ୍ୟଶିରୋମଣି ସାରିପୁତ୍ର ନୁହେଁ, ରୂପଶ୍ରୀର ପୁତ୍ର ସାରିପୁତ୍ର ଫେରି ଆସୁଛି ଆଜ ଜନମାର ଶୂନ୍ୟ କୁଟୀରକୁ ।

ମୁକୁଳିତ ଆମ୍ରୋଦ୍ୟାନରେ କୋକିଳର କୁହୁରବ ଅଶାନ୍ତରୁ ଅଶାନ୍ତତର ହୋଇଉଠୁଛି । ସେହି ବ୍ୟଗ୍ର ଅଶାନ୍ତ କୁହୁରବଭିତରେ ପ୍ରକାଶ ପାଉଛି ଯେପରି ଜନମା ରୂପଶ୍ରୀର ଆହ୍ୱାନ···ଫେରିଆସ ପୁତ୍ର, ଫେରିଆସ ସାରିପୁତ୍ର !

ସାରିପୁତ୍ର ଫେରି ଆସୁଛି ଆଜ !

ଦେବତା, ବ୍ରାହ୍ମଣଙ୍କ କଥା କ'ଣ ମିଛ ହୁଏ ? ସେ ଦିନ ରାତି —କିଏ ଦେବତା ଆସି ସ୍ୱପ୍ନରେ ଦେଖା ଦେଇ କହିଲେ···"ତମେ

ପୂର୍ବଜନ୍ମର ଦୁଷ୍କୃତରୁ ଏ ଜନ୍ମରେ ଏପରି ପୁତ୍ର ବିଚ୍ଛେଦ ଭୋଗ କରୁଛ; କିନ୍ତୁ ସେ ଦୁଃଖର ରାତି ଏଥର ପାହିବ ଆସିଲା ରୂପଶ୍ରୀ... ଦେବ ଦ୍ୱିଜରେ ଭକ୍ତିରଖ । ବ୍ରାହ୍ମଣଙ୍କୁ ସୁବର୍ଣ୍ଣ ଦାନକର । ସାଗରପୁତ୍ର ଫେରି ଆସିବ ନିଶ୍ଚୟ ।''

ରାତି ସେତେବେଳକୁ ତଥାପି ଥାଏ ଆଉରି ବାକି, ରୂପଶ୍ରୀର ଆଖିରେ ଆଉ ପଲକ ପଡ଼ିଲା ନାହିଁ । ସକାଳର ଅପେକ୍ଷାରେ ସେ ଖାଲି ଯନ୍ତ୍ରଣାରେ ପଡ଼ି ଛଟପଟ ହେଉଥାଏ । ଭଲକରି ସକାଳ ନ ହେଉଣୁ ସେ ଧାଇଁଲା ବ୍ରାହ୍ମଣ ଶୁଭ୍ରଜ୍ୟୋତିଙ୍କ ଘରକୁ । ନୀଚ ଶୂଦ୍ର କୁଳରେ ଜନ୍ମ ରୂପଶ୍ରୀର । ଶୁଭ୍ରଜ୍ୟୋତି ସେତେବେଳକୁ ବାହାରି-ଥିଲେ ମନ୍ଦିରପଥରେ ପୂଜାର ଉପକରଣ ନେଇ । ପଥପାର୍ଶ୍ୱରେ ଶୂଦ୍ରାଣୀ ରୂପଶ୍ରୀକୁ ଦେଖି ବିରକ୍ତ ହୋଇ କହିଲେ...''ଦେଖି ପାରୁ ନାହୁଁ ପାପିୟସୀ ! ପୂଜା ଉପକରଣ ନେଇ ମୁଁ ବିଷ୍ଣୁଙ୍କ ମନ୍ଦିରକୁ ଯାଉଛି । ତୋର ଛାୟା ପଡ଼ି ସବୁ ଅପବିତ୍ର ହୋଇଗଲା ଯେ !''

ଶୂଦ୍ରାଣୀ ରୂପଶ୍ରୀ, ଅନୁନୟର କଣ୍ଠରେ କହିଲା...''ମୋତେ କ୍ଷମା କରନ୍ତୁ ବ୍ରାହ୍ମଣ ଶୁଭ୍ରଜ୍ୟୋତି, ମୋର ଅପରାଧ ହୋଇଛି ।''

ତା' ପରେ ଛିନ୍ନ ମଳିନ ପରିଧାନର ଅନ୍ତରାଳରୁ ତାଁର କେତେଗୋଟି ବହୁଦିନରୁ ସଞ୍ଚିତ ସ୍ୱର୍ଣ୍ଣମୁଦ୍ରା କାଢ଼ି ଶୁଭ୍ରଜ୍ୟୋତିଙ୍କ ପାଦତଳେ ରଖି ସେ କହିଲା...''ନିଆଶ୍ରା ହୀନକପାଳୀ ମୁଁ ବ୍ରାହ୍ମଣ, ଆପଣଙ୍କ ପାଖକୁ ଆସିଛି ଗୋଟିଏ ପରାମର୍ଶ ପାଇଁ ।''

ଶୁଭ୍ରଜ୍ୟୋତିଙ୍କ ଗଳାର ସ୍ୱର ନରମ ହୋଇଗଲା । ସେ ଆଶ୍ୱାସନା ଓ ଦମ୍ଭ ଶୁଣାଇ କହିଲେ...''କ'ଣ ହୋଇଛି ମୋତେ କୁହ ରୂପଶ୍ରୀ ! ଦୁଃଖରେ ଅଧୀରହୁଅନା । ପ୍ରାଣୀର ଦୁଃଖ ଅପନୋ-

ଦାନ କରିବା ତ ବ୍ରାହ୍ମଣର କର୍ତ୍ତବ୍ୟ । ଏ ସ୍ୱର୍ଣ୍ଣମୁଦ୍ରାରେ ବା କି ପ୍ରୟୋଜନ ଥିଲି ? ହେଉ, ଆଣିଛୁ ଯେତେବେଳେ, ନ ନେଲେ ତ ମୋର ଅପରାଧ ହେବ ।"

ରୂପଶ୍ରୀ କହିଲି···"ସାଖିପୁତ୍ର କ'ଣ ସତରେ ଫେରିବ ଆଉ ବ୍ରାହ୍ମଣ ? କାଲି ରାତିରେ ମୁଁ ସ୍ୱପ୍ନରେ ଦେଖିଲି, ଜଣେ ଦେବତା ମୋତେ ସ୍ୱପ୍ନରେ ଦେଖାଦେଇ ଅଭୟ ଶୁଣାଇଲେ···ମୋର ସାଖି ଫେରି ଆସିବ ନିଶ୍ଚୟ । କେଉଁ ପୂର୍ବଜନ୍ମର ଦୁଷ୍କୃତରୁ ମୁଁ କୁଆଡ଼େ ଏ ଜନ୍ମରେ ଏ ପୁତ୍ରବିଚ୍ଛେଦ ଭୋଗ କରୁଛି; କିନ୍ତୁ ସାଖି ଫେରିବ ତ ! କୁହ ବ୍ରାହ୍ମଣ···ତମେ ତ ତ୍ରିକାଳଦର୍ଶୀ ।"

ଶୁଭ୍ରଜ୍ୟୋତି କିଛି ସମୟ ଦୁଇ ଚକ୍ଷୁ ନିମୀଳିତ କରିବା ପରେ କହିଲେ···"ତମେ ପୂର୍ବଜନ୍ମରେ ବ୍ୟାଧ ରୂପରେ ଜନ୍ମ ନେଇଥିଲ ରୂପଶ୍ରୀ ! ଦିନେ ଗୋଟିଏ ମୃଗୁଣୀ ମୃଗ ଶିଶୁ ସହିତ ଯାଉଥିଲି ଶାନ୍ତ ଗ୍ରୀଷ୍ମ ସ୍ନିଗ୍ଧ ଅରଣ୍ୟପଥରେ । ସେତିକିବେଳେ ତମେ ଶର ସନ୍ଧାନ କଲ ମୃଗଣୀକୁ ଲକ୍ଷ୍ୟ କରି; କିନ୍ତୁ ଶରଭେଦ କଲା, ମୃଗଶିଶୁର ନବନୀତ କୋମଳ ଦେହରେ । ସଙ୍ଗେ ସଙ୍ଗେ ଯନ୍ତ୍ରଣାର ଜ୍ୱାଳାରେ ପ୍ରାଣବାୟୁ ତାର ଉଡ଼ିଗଲା । ସେହି ମୃଗୁଣୀର ଅଭିଶାପରେ ତୁମକୁ ଏ ଜନ୍ମରେ ଭୋଗ କରିବା ପାଇଁ ପଡ଼ୁଛି ଏ ପୁତ୍ର ବିଚ୍ଛେଦ ଯନ୍ତ୍ରଣା । ତଥାପି ସ୍ୱଚ୍ଛ ହୃଦୟରେ ଫେରିଯାଅ ରୂପଶ୍ରୀ, ସାଖିପୁତ୍ର ଫେରି ଆସିବ ନିଶ୍ଚୟ !"

ରୂପଶ୍ରୀ ବ୍ରାହ୍ମଣ ଶୁଭ୍ରଜ୍ୟୋତିଙ୍କ ପାଦତଳେ ପ୍ରଣତି ଜଣାଇ କହିଲି···"ତମର ଆଶୀର୍ବାଦ ପୂର୍ଣ୍ଣ ହେଉ ବ୍ରାହ୍ମଣ !"

ସେ ଅନେକ—ଅନେକ ଦିନ ତଳର କଥା । ସାଖିପୁତ୍ତର ପ୍ରତୀକ୍ଷାରେ ଦିନ ରାତି ହୁଏ, ରାତି ଦିନ ହୁଏ ପୁଣି; ତଥାପି ଛାଡ଼ିନାହିଁ ରୂପଶ୍ରୀର ଆଶା···ସାଖିପୁତ୍ର ଫେରିବ ନିଶ୍ଚୟ ।

ଦିନେ ଦିନେ ଜନଶ୍ରୁତିରେ ରୂପଶ୍ରୀ ଶୁଣେ ପୁତ୍ର ସାଖିପୁତ୍ତର କଥା । ପ୍ରଭୁ ବୁଦ୍ଧଙ୍କର ଶିଷ୍ୟ ଶିରୋମଣି ସାଖିପୁତ୍ତ···ପ୍ରଭାବରେ ତାଙ୍କର ସମୁଦାୟ ଆର୍ଯ୍ୟାବର୍ତ୍ତ ଉଦ୍‌ଭାସିତ, ମହିମାରେ ମହିମାନ୍ୱିତ, କରୁଣାରେ ସ୍ନିଗ୍ଧ ଓ ସାଧନାରେ ଉଜ୍ଜ୍ୱଳ ! କିନ୍ତୁ ପୁତ୍ରର ସୁଖ୍ୟାତିରେ ଜନନୀର ପ୍ରାଣ ଗର୍ବୋତ୍‌ଫୁଲ୍ଲ ହୁଏନା ! ପ୍ରାଣର ନିଭୃତ କନ୍ଦରରେ ତାର ଜାଗି ଉଠେ ଅସ୍ଫୁଟ ନୀରବ ପ୍ରାର୍ଥନା······ ସାଖିପୁତ୍ତକୁ ସଦ୍‌ବୁଦ୍ଧି ଦିଅ ଭଗବାନ ! ଏ ମତିଭ୍ରମରୁ ଅବୋଧ ପୁତ୍ରକୁ ତାର ରକ୍ଷା କର ପ୍ରଭୁ ! ଦେବତା, ବ୍ରାହ୍ମଣ ନିନ୍ଦାଠୁଁ ବଳି ଆଉ କି ଘୋରତର ପାପ ବା ଥାଇପାରେ ? ମଣିଷ ଜନ୍ତୁମାନେ ସମାନ, ଏହା କ'ଣ ସମ୍ଭବ ହୋଇପାରେ କେବେ ? ବେଦକୁ ଅସ୍ୱୀକାର କଲେ, ସପ୍ତନରକରେ ସୁଦ୍ଧା ସ୍ଥାନ ମିଳିବ ନାହିଁ ଯେ ? ହେ ଦଶଦିଗପାଳ, ହେ ତେତିଶକୋଟି ଦେବତା, ସାଖିପୁତ୍ତକୁ ମାର୍ଜନା କର······ସଦ୍‌ବୁଦ୍ଧି ଦିଅ ତାକୁ !

କେବେ କେବେ ବୌଦ୍ଧଭିକ୍ଷୁମାନେ, ରୂପଶ୍ରୀର କୁଟୀରକୁ ଆସନ୍ତି ଭିକ୍ଷାପାଇଁ; କିନ୍ତୁ ରୂପଶ୍ରୀ ସେମାନଙ୍କୁ ଦୂର୍‌ଦୂର୍ ମାରି ମାରି କରି ତଡ଼ିଦିଏ । ବୌଦ୍ଧଭିକ୍ଷୁମାନଙ୍କୁ ଦେଖିଲେ, ତାରଦେହ ସାରା ଯେମିତି ବିଷ ଚଢ଼ିଯାଏ ? କରୁଣାର ଆବରଣ ତଳେ କି ନିଷ୍କରୁଣ ଜୀବ ଏମାନେ ! ଘର ନାହିଁ, ଦ୍ୱାର ନାହିଁ, ମା ନାହିଁ, ପୁଅ ନାହିଁ, ଝିଅ ନାହିଁ, ମାୟା ନାହିଁ, ମମତା ନାହିଁ—ଅଥଚ କିଏ ଏମାନଙ୍କୁ କହିଥିଲା ଏ ପୃଥିବୀକୁ ଆସି ପୃଥିବୀର ଦୁଃଖ ସଙ୍ଗରେ ଅଶାନ୍ତିର ଭାର ବଢ଼ାଇବା ପାଇଁ ?

ରୂପଶ୍ରୀ କେବେ ଅବଶ୍ୟ ବୁଦ୍ଧଙ୍କୁ ଦେଖିନାହିଁ; କିନ୍ତୁ ଶୁଣିଛି—ସେଦିନ କୁଆଡ଼େ କି ଗୋଟିଏ ପୂର୍ଣ୍ଣିମାର ରାତି ! କପିଳବାସ୍ତୁ ରାଜ ପ୍ରାସାଦରେ ସମସ୍ତେ ଯିଏ ଯୁଆଡ଼େ ଶୋଇ ପଡ଼ିଲେଣି । ସୁକୁମାରୀ ଗୋପା ସ୍ୱାମୀଙ୍କ ବାହୁଉପରେ ପୁଷ୍ପିତ କବରୀର ଭାର ରଖି ଶୋଇ ପଡ଼ିଛନ୍ତି । ଗୋପାଙ୍କ କୋଳରେ ଶିଶୁ ରାହୁଳ ମଧ୍ୟ ନିଦ୍ରା-ଅଚେତନ । ରାତିର ସେହି ନିସ୍ତବ୍ଧ ପ୍ରହରରେ ଗୌତମ, ଗୋପାଙ୍କ ମୁଣ୍ଡ ନିଜ ବାହୁ ଉପରୁ ଖସାଇ ନେଲେ । ତା'ପରେ ସନ୍ନ୍ୟାସୀର ଗୈରିକ ବସନ ପିନ୍ଧି ବାହାରିଲେ କପିଳବାସ୍ତୁର ସୁପ୍ତ ରାଜପଥରେ ! ଆଉ ପଛରେ ରଖିଗଲେ ଏକ ବିରାଟ ଅଶାନ୍ତି,ଶେଷହୀନ ହା-ହା-କାର ଓ ତୃପ୍ତି ହୀନ ତୃଷ୍ଣା । ଯେତେଥର ରୂପଶ୍ରୀ ଗୋପାଙ୍କ କଥା ଭାବିଛି, ସେତେଥର ରାଜରାଣୀ ଗୋପାଙ୍କ ଦୁଃଖରେ ପ୍ରାଣ ତାର କାନ୍ଦି କାନ୍ଦି ଉଠିଛି । ଶିଥିଳ, ରକ୍ତହୀନ ଦୁଇ ଗଣ୍ଡ ଉପରେ ବହି ଆସିଛି ଦୁଇଧାର ଲୁହ ।

ସାରିପୁତ୍ର ଦିନେ ବିବାହ କରିଥାନ୍ତା, ଘରକୁ ଆସିଥାନ୍ତା ବୋହୂଟିଏ । ତା'ର ଶୁଭ କଙ୍କଣଧ୍ୱନିରେ ରୂପଶ୍ରୀର ରିକ୍ତ ଓ ଶୂନ୍ୟ ଜୀବନର ହା-ହା-କାରମୟ କୋଣ, ଅନୁକୋଣ ମୁଖରିତ ହୋଇ ଉଠିଥାନ୍ତା । ତା' ପରେ ଆସିଥାନ୍ତେ ବସନ୍ତର ନବମୁକୁଳ ପରି, କେତେ ଶିଶୁ କୋଳାହଳ କରି । ଶୀତଶୀର୍ଣ୍ଣା ଧରଣୀରେ ବସନ୍ତର କଳରବ ପରି, ରୂପଶ୍ରୀର ଜୀବନରେ ମଧ୍ୟ ଆସିଥାନ୍ତା ବସନ୍ତ; କିନ୍ତୁ ହେଲା ଆଉ କେଉଁଠୁ ? ସବୁ ସ୍ୱପ୍ନ ଖାଲି ସ୍ୱପ୍ନରେ ହିଁ ରହିଲା । ସାରିପୁତ୍ର ହେଲା ଘରଛଡ଼ା ଉଦାସୀ !

ଏ……ମା ! ଦିନ ଆସି କେତେ ହେଲାଣି ମ ? ରୂପଶ୍ରୀ ତରତର କରି ବିଛଣା ଉପରେ ଉଠି ବସିଲା ! ନାଁ, ଆଜି ଆଉ ସେ କାହା ଦୁଆରକୁ ଫିରିବନାହିଁ ପାଇଟି କରି । ଆଜି

ଯେ ସେ ତାର ହଜିଲା କୋଠିମଧ୍ୟ ପୁଣି ଫେରିପାଇବ । ଆଉ ରହିବ ନାହିଁ ଦାରିଦ୍ର୍ୟ, ଅଭାବ ଓ ଦୁଃଖ ! ଛାଳ ଉପରେ ଶୁଭ କାଉଟିଏ କା-କା ହେଉଛି ! ରୂପଶ୍ରୀ ଉଠିଯାଇଁ ମୁଠାଏ ଚାଉଳ ରଖିଦେଲା ଦୁଆର ମଝିରେ । କାଉ ଆସି ଗୋଟାଏ ମୁଠା ଚାଉଳ ଖୁମ୍ପି ନେଇ ପୁଣି ଉଡିଗଲା ଛାଳ ଉପରକୁ । ଶୁଭକାଉ କଥା ମିଛ ହେବନାହିଁ କେବେ······ସାଧୁପୁଅ ଫେରିଆସୁଛି, ଆଜ ରୂପଶ୍ରୀର କୋଳକୁ !

ଏତେଦିନ ଏତେ ଆଶା ତ ମିଛ ହୋଇଛି । ଆଜ ଯଦି ଆଗପରି ସବୁ ମିଛ ହୋଇଯାଏ ? ରୂପଶ୍ରୀର ଛାତି ଦମ ଦମ ହୋଇ ପଡ଼ିଲା ।···ନା-ନା, ଶୁଭକାଉର କଥା କ'ଣ ମିଛ ହୁଏ କେବେ ?

ସେଦିନ ରୂପଶ୍ରୀ, ସାରା ଦିନର ପେଟପାଟଣା ପରେ କୁଡ଼ିଆ ଦୁଆରେ ବସି ଚାହିଁଥିଲା, ଦୂରର ଅଙ୍କାବଙ୍କା ରାସ୍ତା ଆଡ଼େ । ସେଇ ରାସ୍ତାରେ ସାଧୁପୁଅ ଦିନେ କୁଆଡ଼େ ଚାଲିଗଲା । ଆଉ ହୁଏତ ଫେରିବ ନାହିଁ; କିନ୍ତୁ ଶୁଭ୍ରଜ୍ୟୋତି ତ ବାରମ୍ବାର ସାନ୍ତ୍ୱନା ଦିଅନ୍ତି ତାକୁ···କେଜାଣି ହୁଏତ ଫେରିପାରେ !

ଓଃ···ସେ ଅନେକ, ଅନେକ ଦିନ ତଳର କଥା । ନାଳନ୍ଦାରୁ ଦଳେ ଅଭିନେତା ସବୁଆଡ଼େ ବୁଲି ବୁଲି 'ନିର୍ବାଣ' ନାଟକର ଅଭିନୟ ଦେଖାଉଥାନ୍ତି । ଦିନେ ଅଭିନୟ ଦେଖିଯିବା ପାଇଁ ସାଧୁପୁଅ ଅଡ଼ି ବସିଲା । ରୂପଶ୍ରୀ ସେଥିରେ ବାଧା ଦେଲାନାହିଁ । ଅଭିନୟ ଦେଖି ଫେରିବା ପରେ ସାଧୁପୁଅ ପାଲଟିଗଲା ଯେମିତି ଗୋଟିଏ ଭିନ୍ନ ମଣିଷ । ସେଦିନ ସାଧୁପୁଅ ସବୁଦିନ ପରି ଗୋଠକୁ ଗାଈପଲ ଧରି ଗଲା ନାହିଁ, ଗାଧୋଇଲା ନାହିଁ କି ଖାଇଲା ନାହିଁ । ରୂପଶ୍ରୀର ଲକ୍ଷ ପ୍ରଶ୍ନ···କଣହୋଇଛି ତାର ? କିନ୍ତୁ ସାଧୁପୁଅ

କୌଣସି ଉତ୍ତର ଦେଲି ନାହିଁ । ···କେତେବେଳ ପରେ ସାପୁଅ ପଚାରିଲା, 'ତୁ କ'ଣ ଦିନେ ମରିଯିବୁ ବୋଉ ?' ରୂପଶ୍ରୀ ହସି ହସି ଜବାବ ଦେଲା···"ସେ ଆଉ ନୂଆକଥା କ'ଣରେ ବାପ ? ଦେବତା-ମାନେ ତ ସୁଦ୍ଧା ଜନ୍ମହେଲେ ମରନ୍ତି ।"

ସାପୁଅ ପଚାରିଲା·····"ମୁଁ ବି ତ ଦିନେ ମରିଯିବି ବୋଉ !"

ରୂପଶ୍ରୀର ମୁହଁ ଉପରେ ଯେପରି କଳାମେଘର ଛାଇ ବୁଲିଗଲା । ସେ କାନ୍ଦ କାନ୍ଦ ହୋଇ ସାପୁଅକୁ ଛାତି ଉପରେ ଚାପି ଧରି କହିଲା·····"ସେ କଥା ଆଉ କେବେ ମୁହଁରେ ଧରିବୁ ନାହିଁ ରେ ବାପ ! ତୋର ମୁହଁକୁ ଚାହିଁ ମୁଁ ଖାଲି ଛାତି ପଥର କରି ପଡ଼ି ରହିଛି । ଷଷ୍ଠୀଦେବୀ ତତେ ନଷ୍ଟବାଳର ଆୟୁଷ ଦିଅନ୍ତୁ ।"

ସାପୁଅ ଧୀରେ ଧୀରେ ଉଠି ଠିଆ ହେଲା । ତା'ପରେ ଗାଁ ଦାଣ୍ଡର ସେଇ ଅଙ୍କାବଙ୍କା ରାସ୍ତାରେ ବାହାରିଗଲା କୁଆଡ଼େ । ରୂପଶ୍ରୀ ମନେ ମନେ ଭାବିଲା, ମୁଣ୍ଡପାଗଳଟା, କ'ଣ ଏଣୁ ତେଣୁ ଗୁଡ଼ାଏ ପଚାରୁଥିଲା । ବାହାରୁ ଟିକିଏ ବୁଲି ଆସିଲେ ମନ ତାର ପୁଣି ବଦଳିଯିବ ଯେ ! ରୂପଶ୍ରୀ ନିତିଦିନିଆ ପେଟପାଟଣାରେ ମନ ଦେଲା ।

ସନ୍ଧ୍ୟା ହେଲା । ଗୋଠରୁ ଗାଈପଲ ଫେରିଲେ । ଦେଉଳରେ ଆରତି ଘଣ୍ଟା ବାଜିଲା । ରାତି ଆସିଲା । ଅନ୍ଧାର ଆହୁରି ନିବୁଜ ହୋଇ ଆସିଲା । ଆକାଶରେ ଏକ, ଦୁଇ, ତିନି ହୋଇ ଫୁଟି ଉଠିଲା କୋଟି କୋଟି ନକ୍ଷତ୍ର । ସାପ କାହିଁ ! କାହିଁ ସାପୁଅ ?

ନଜର ଚଳାରେ ରୂପଶ୍ରୀ ନିଜେ କୁଆଡ଼େ ହଜିଯାଇଛି । ଜଣେ ବୌଦ୍ଧଭିକ୍ଷୁ କୁଆଡୁ ଆସି ରୂପଶ୍ରୀର ପିଣ୍ଡାରେ ବସିପଡ଼ି ଗାଇ ଉଠିଲା·········

"ବୁଦ୍ଧଂ ଶରଣଂ ଗଚ୍ଛାମି !"

ରୂପଶ୍ରୀର ଦେହସାରା ଯେମିତି ବିଷ ଚରିଗଲା; ମାତ୍ର ନିଜକୁ ସଂଯତ କରି, ସେ କେଜାଣି କାହିଁକି ପଚାରି ଦେଲା.....“ଆଚ୍ଛା, ତୁମେ ସାରିପୁତ୍ରଙ୍କ ଖବର ଜାଣିଛ ଭିକ୍ଷୁ ?”

ଭିକ୍ଷୁ କହିଲା...“ନିଶ୍ଚୟ ! ତାଙ୍କରିଠାରୁ ଖବର ନେଇ ତ ଲୁମ୍ବିନୀରୁ ଏତେ ବାଟ ଚାଲି ଚାଲି ଆସୁଛି ।”

ରୂପଶ୍ରୀ ଆନନ୍ଦୋତ୍‌ଫୁଲ୍ଲ କଣ୍ଠରେ ପଚାରିଲା...“କି ଖବର ପଠାଇଛି ସାରିପୁତ୍ର ?.....କୁହ ଭିକ୍ଷୁ, ତାରି ପାଇଁ ତ ମୁଁ ଚାତକ ପରି ଚାହିଁ ବସିଛି । କୁହ ଭିକ୍ଷୁ, ତାର ସବୁ କୁଶଳ ତ ?”

ଭିକ୍ଷୁ କହିଲା...“ଆସନ୍ତା ଫାଲ୍‌ଗୁନ ପୂର୍ଣ୍ଣିମାଦିନ ସେ ଫେରି ଆସିବେ ବୋଲି ମୋ ହାତରେ ଖବର ପଠାଇଛନ୍ତି ମା ।”

ସେଦିନ ରୂପଶ୍ରୀ ଦ୍ୱାରରୁ ଭିକ୍ଷାତଣ୍ଡୁଳର ଘର, ଭିକ୍ଷୁ ବୋହି ପାରିଲା ନାହିଁ । ଏ ଘରଛଡ଼ା ଭିକ୍ଷୁମାନଙ୍କ ପ୍ରତି ରୂପଶ୍ରୀର ପ୍ରାଣ କିପରି ଅସ୍ୱାଭାବିକ ଭାବରେ କୋମଳ ହୋଇ ଉଠିଲା ।

ସେ ଦିନ ଫାଲ୍‌ଗୁନ ପୂର୍ଣ୍ଣିମା.........

ପୂର୍ଣ୍ଣଚନ୍ଦ୍ର ଉଠୁଛି ରାଜଗୃହ ସୀମାନ୍ତରେ ବନଶୀର୍ଷଉତ୍ତାଳରୁ । ରୂପଶ୍ରୀ ସେହି ପୂର୍ଣ୍ଣଚନ୍ଦ୍ର ଆଡ଼େ ଚାହିଁ ସ୍ୱପ୍ନରେ ଜାଲ ବୁଣି ଚାଲିଛି । ପୁଣି ତାର ଭଙ୍ଗା ସଂସାର ସୁନାର ହସରେ ହସି ଉଠିବ । ସାରିପୁତ୍ରକୁ ବିଦାୟ ନ ଦେଇ ସେ ଛାଡ଼ିବ ନାହିଁ ଏଥର ।

ସେ ଯେଉଁ ଚମ୍ପାଗୋରୀ ଝିଅଟି—ଉପାଳୀ ! ଅନେକ, ଅନେକ ଦିନରୁ ରୂପଶ୍ରୀ ତା କଥା ଭାବି ଠିକ୍ କରି ରଖିଛି ।

ଉପାଳୀର କଳା ଆଖିର ସ୍ୱପ୍ନ-ଜାଲରେ ଥରେ ଧରାପଡ଼ିଲେ, ସେ କ'ଣ ଆଉ କେବେ ଏ ଘରଛଡ଼ା ଭିକ୍ଷୁଙ୍କ ଦଳରେ ମିଶିବ ? ହେ ଭଗବାନ ! ଏଥର ଯେମିତି ତା'ର ହରାନିଧି, ତାହାକୁ ଆସି ପୁଣି ହାତଛଡ଼ା ନ ହୁଏ !

ପୂର୍ଣ୍ଣିମାର ଚନ୍ଦ୍ର, ଦିଗ୍‌ବଳୟର ବହୁତ ଉପରକୁ ଉଠି ଆସିଲାଣି । ରୂପଶ୍ରୀର ମନର ଆକାଶରେ ଆଶଙ୍କାର ଛାଇ କ୍ରମେ ଦୀର୍ଘରୁ ଦୀର୍ଘତର ହୋଇ ଉଠୁଛି । ଏତିକବେଳେ ଦୂରରୁ କାହାର କଣ୍ଠସ୍ୱର ଶୁଭିଲା···"ବୁଦ୍ଧଂ ଶରଣଂ ଗଚ୍ଛାମି !"

କାହାର ? କାହାର ଏ କଣ୍ଠସ୍ୱର ? ଏ ଯେ ସାଗରପୁତ୍ର । ରୂପଶ୍ରୀ ଉଠି ପଡ଼ି ଧାଇଁଗଲା ପୂର୍ଣ୍ଣିମାର ଜ୍ୟୋତ୍ସ୍ନାଲୋକ ଭିତରକୁ ! କଣ୍ଠରେ ତାର ଅଶାନ୍ତ ଚିତ୍କାର···"ସାଗର—ସାଗରପୁତ୍ର !"

ଗୋଟିଏ ଶୀର୍ଣ୍ଣ, ଲୁଣ୍ଠିତମସ୍ତକ, ଜରାଜୀର୍ଣ୍ଣ ଭିକ୍ଷୁ ରୂପଶ୍ରୀର ପାଦତଳେ ମୁଣ୍ଡ ନୁଆଇଁ ପ୍ରଣିପାତ କଲେ । ରୂପଶ୍ରୀ ବ୍ୟସ୍ତ ଭାବରେ ପଚାରିଲା—"ବୃଦ୍ଧ ଭିକ୍ଷୁ ! ସାଗରପୁତ୍ର କାହିଁ ? ଆଜ ପରା ଫାଲ୍‌ଗୁନ ପୂର୍ଣ୍ଣିମା !"

ଭିକ୍ଷୁ ଜବାବ ଦେଲା—"ମୁଁ ଯେ ସାଗରପୁତ୍ର ମା !"

ରୂପଶ୍ରୀ କାନ୍ଦ କାନ୍ଦ ହୋଇ କହିଲା—"ନା, ନା-ମୋ ସଙ୍ଗରେ ଆଉ ଛଳନା କରନା ବାପ ! ବୃଦ୍ଧ ମୋର ସାଗର କାହିଁ ?"

ଭିକ୍ଷୁ ସ୍ମିତ ହସି କହିଲେ—"ମୁଁ ଯେ ତମର ସାଗରପୁତ୍ର ମା ! ଲୁମ୍ବିନୀରୁ ଆସୁଛି ।"

ଏଇ ସାରୀପୁତ୍ର ! ଏଇ ଲଣ୍ଡିତମସ୍ତକ, ଜରାଜୀର୍ଣ୍ଣ, କଙ୍କାଳ-ସାର ଭିକ୍ଷୁ ! ମୁହଁରେ ପୁଣି ସେଇ ଅଲକ୍ଷଣା ଘରଭଙ୍ଗା କଥା—"ବୁଦ୍ଧଂ ଶରଣଂ ଗଚ୍ଛାମି !"

ଏ ଯେମିତି ତାର ଭଙ୍ଗାସଂସାରର ବିକଟ ଉପହାସ ! ତାର ସ୍ୱପ୍ନର ସମାଧି । ସେ ତ ଏ ସାରୀପୁତ୍ର ଗୃହୁଁ ନ ଥିଲା ! ରୂପଶ୍ରୀର କଣ୍ଠ ହଠାତ୍ କଠୋର ହୋଇ ଉଠିଲା । ସେ ପଚାରିଲା···"କୁହ ଭିକ୍ଷୁ ! ମୋଠାରେ ବା କି ପ୍ରୟୋଜନ ? ତମେ ପ୍ରଭୁ ବୁଦ୍ଧଙ୍କର ଶିଷ୍ୟଶିରୋମଣି, ସାଧକଶ୍ରେଷ୍ଠ ସାରୀପୁତ୍ର ! ଆଜି ମୁଁ ଧାନା, ହୀନା, ପୁତ୍ରହୀନା·ଏକ ଜନନୀ ! କ'ଣ ବା ଅଛି ମୋର ? କି ଭିକ୍ଷା ବା ଦେବି ମୁଁ ?"

ବାଳିକା-ସୁଲଭ ଅଭିମାନରେ ବୃଦ୍ଧା ରୂପଶ୍ରୀର କଣ୍ଠ ଥରଥର ଉଠିଲା !

ସାରୀପୁତ୍ର କହିଲେ···"ଗୋଟିଏ ଭିକ୍ଷା ନେଇ ମୁଁ ଆସିଛି ମା ! ଗୌତମୀ ପ୍ରଜାପତିଙ୍କ ସଂଘରେ ଯୋଗଦେବା ପାଇଁ ପ୍ରଭୁ ବୁଦ୍ଧ ଆଜ୍ଞା ଦେଇଛନ୍ତି । ତାଙ୍କର ସହକର୍ମିଣୀ ରୂପେ, ମୁଁ ତୁମକୁ ଗୃହେଁ ମା ! ସେହି ମୋର ଭିକ୍ଷା !"

ରୂପଶ୍ରୀ ଆହତ ଦୃଷ୍ଟିରେ ଗୃହିଁଥିଲା ଫାଲ୍‌ଗୁନ ପୂର୍ଣ୍ଣିମାର ଚନ୍ଦ୍ରଆଡ଼େ । ସାରୀପୁତ୍ର କହିଲେ···"କୁହ ମା ! ବୁଦ୍ଧଂ ଶରଣଂ ଗଚ୍ଛାମି !"

ରୂପଶ୍ରୀ ରୂଢ଼କଣ୍ଠରେ କହିଲା···"ଫେରିଯାଅ ଭିକ୍ଷୁ ! କୋଟି କୋଟି ପ୍ରାଣରେ ଅଶାନ୍ତି ·ଓ ଅତୃପ୍ତିର ଦାବାନଳ ଜଳାଇ ଯେଉଁ

ସଂଘର ପ୍ରତିଷ୍ଠା, ସେ ସଂଘ ରହିବ ନାହିଁ ଭିକ୍ଷୁ ! ଏ ମୋର ଅଭିଶାପ ।”

ସାଗିପୁତ୍ର କିଂକର୍ତ୍ତବ୍ୟବିମୂଢ଼ ଭାବରେ କହିଲେ ‘ମା !’

ରୂପଶ୍ରୀ ଜବାବ ଦେଲା –“ଭିକ୍ଷୁର ମା ପୁଣି କ’ଣ ?”

ସାଗିପୁତ୍ର କହିଲେ—“କିନ୍ତୁ ନିର୍ବାଣର ଏକମାତ୍ର ପଥ ପ୍ରଭୁ ବୁଦ୍ଧଙ୍କର ଏହି ସଂଘ, ମା ! ନିର୍ବାଣ କ’ଣ ତମେ ଚାହଁ ନାହିଁ ଜନନୀ ?”

ରୂପଶ୍ରୀ କହିଲା—“ଫେରିଯାଅ ଭିକ୍ଷୁ ! ମୁଁ ଚାହେଁ ଜୀବନ; ନିର୍ବାଣ ନୁହେଁ !”

ରୂପଶ୍ରୀ ଫେରି ଆସିଲା ତାର ସେହି ଭଙ୍ଗା କୁଡ଼ିଆ ଆଡ଼େ ! ସାଗିପୁତ୍ର ରାତିର ଅଶାନ୍ତ ସ୍ତୁପାପରି, ମିଶିଗଲେ ଫାଲ୍‌ଗୁନ ପୂର୍ଣ୍ଣିମାର ଜ୍ୟୋସ୍ନା ଭିତରେ ।

(ମାର୍ଚ୍ଚ ୧୯୮୯)

---

# ଅଶରୀରୀର ଆତ୍ମା

ଶ୍ରୀ ଲକ୍ଷ୍ମୀଧର ମହାନ୍ତ, ବି. ଏ.

ଅଗଣିତ ଆଖିର ଅଶ୍ରୁ ଳ ଗୃହାଣୀ—

ଶୋଭାଯାତ୍ରା ଚାଲିଛି । ସମଗ୍ର ଜନତାର ଏ ଶୋଭାଯାତ୍ରା—ଧନୀ ଓ ଦରିଦ୍ରର ଶୋଭାଯାତ୍ରା । ବୁକୁ ଭିତରେ ଅଶ୍ରୁ ଓ ବେଦନାର ରେଖା ଟାଣି ଟାଣି ଏ ଶୋଭାଯାତ୍ରା ଚାଲିଛି । ଧୀରେ-ଅତି ଧୀରେ—ଗମ୍ଭୀର ଓ ଶାନ୍ତ । ଶରତର ଏକ ଆସନ୍ନ ସନ୍ଧ୍ୟା । ସହର ପରିକ୍ରମା କରି ଅଗଣିତ ଜନତା ପୁଣି ଫେରିଆସିବ ଏଇ ବେଳାକୂଳକୁ ।

ବିରାଟ ଏ ଜନସମୁଦ୍ର ଭିତରେ ଗାନ୍ଧିଙ୍କର ସେଇ ପ୍ରତିକୃତିଟି ସ୍ପଷ୍ଟ ବାରି ହୋଇଯାଉଛି । ଘୃଣା ଓ ଅବିରତ ଅବି-ଶ୍ରାନ୍ତ ସମ୍ମାନ ଭିତରେ ମଧ୍ୟ ସେ ଝାଉଁଳି ପଡ଼ିନି । ମୁହଁରେ ସେଇ ଶାଶ୍ୱତ ପ୍ରାକୃତିକ ହସ, ଆଖି କୋଣରେ ସେହି ସରଳ ନିସ୍ପୃହ ଗୃହାଣୀ । ମରଣ ପରେ ବି ସେ ହାତଯୋଡ଼ି ପ୍ରଣତି ଜଣାଉଛି, ଏଇ ଅସଂଖ୍ୟ ବ୍ୟକ୍ତିବିଶେଷ ଉଦ୍ଦେଶ୍ୟରେ । ସେଇ ପରିଚିତ ଗାନ୍ଧିଜୀଙ୍କର ଯୋଡ଼ହସ୍ତ ପ୍ରତିକୃତିଟି କେଉଁ ଏକ ଶିଳ୍ପୀ ତା'ର ଅନ୍ତରର ନୀରବ ପ୍ରାର୍ଥନା ଢାଳି ଦେଇଛି ଖଣ୍ଡେ କେରପାଲ

ଉପରେ । ଶିଳ୍ପୀର ଚରମ ସାର୍ଥକ ଏ ସୃଷ୍ଟି । ସତେ ଅବା ଏଇ ପ୍ରତିକୃତି ଭିତରେ ସେଇ ଦୁଇଟି ହାତର ଅନୁନୟ ଅନୁରୋଧ—

— "ହେ ମୋର ପ୍ରିୟ ସନ୍ତାନ ! ନିଜ ନିଜ ଭିତରୁ ଗର୍ବ ଅଭିମାନ ଲିଭାଇ ଦିଅ । ଜଗତକୁ ପ୍ରେମ କର । ସେଇ ପ୍ରେମ— ଭିତରେ ବିଶ୍ୱପିତାଙ୍କର ସନ୍ଧାନ ପାଇବ । ସେଇ ପ୍ରେମ ଭିତରେ ଦେଶ ରାମରାଜ୍ୟ ପାଲଟିଯିବ ।"

ଠିକଏ ପ୍ରେମ ପାଇବ ବୋଲି ଯେ ବୁଢ଼ା ବୟସରେ ବାର ଦୁଆର ବୁଲୁଥିଲି, ସେଇ ପ୍ରେମପାଗଳର ମୃତ୍ୟୁପରେ ମଧ୍ୟ ଆଜି ଏ ଅନୁରୋଧ; ଏ ଅନୁରୋଧ ଲିଭିବାର ନୁହେଁ କମ୍ପି ହାତର ଶ୍ରେଷ୍ଠ ପାପୁଲି ଦୁଇଟି ଯୋଡ଼ି ହୋଇଯାଇଛି ଏକ କଳିକା ଶ୍ୱେତ-ପଦ୍ମ ପରି । ଯୁଗ ଯୁଗ ପାଇଁ ଦଶଟି ଅଙ୍ଗୁଳିର ଏ ନିବିଡ଼ ବନ୍ଧନ ଅଜ୍ଞ ଭାରତବାସୀଙ୍କୁ ଯେପରି ଅଶ୍ରୁ ପ୍ରାର୍ଥନା ଜଣାଉଛି ।

—"ହେ ଧନ ହୀନ ଭାରତବାସୀ ! ମନରୁ ସବୁ କାଳିମା ଲିଭାଇଦିଅ ! ସବୁ ଭେଦଭାବ ଭୁଲି ଏକପ୍ରାଣରେ ଆଗେଇ ଚାଲ, ବହୁତ କଷ୍ଟ କରିବାର ଅଛି । ବହୁତ କଷ୍ଟ କରିବାକୁ ପଡ଼ିବ—"

× × ×

ରାତ୍ରି ଶେଷଯାମରେ ପ୍ରାୟ, ବାହାରେ ମଳିନ ଆକାଶ ଭିତରେ ଏକାଦଶୀ ଜହ୍ନର ପାଣ୍ଡୁର ହସ । ଚକ୍ରବାଳ ତଳେ ଏଇ ହସଟିକକ ମ୍ଳାନରୁ ମ୍ଳାନତର ହୋଇଉଠିଛି ଯେପରି । ବାରି କାଠ-ଚମ୍ପା ଗଛ ଉପରେ କେଉଁ ଅଜଣା ପକ୍ଷିଯୁଗଳ ଡେଣାରେ ଡେଣା ଛନ୍ଦିଦେଇ ଘୁମାଇ ପଡ଼ିଛନ୍ତି ସନ୍ତର୍ପଣତା ସହିତ ।

ଏତେ ରାତ୍ରିରେ ବି ରାୟବାହାଦୂରଙ୍କ ଆଖିରେ ତନ୍ଦ୍ରା ଆସି ନ । ଶୋଭାଯାତ୍ରାରୁ ଫେରିବା ପରେ ଗାନ୍ଧିଜୀଙ୍କର ସେଇ ଯୋଡ଼ହସ୍ତ ଛବିଟି ତାଙ୍କ ଆଖି ଆଗରେ ନାଚି ଉଠୁଛି । ସତେ ଅବା ସେଇ ଛବିଟି ରାୟବାହାଦୂର ବଂଶୀଧରଲାଲଙ୍କୁ ହାତଯୋଡ଼ି ଚେତାଇ ଦେଉଛି—

"କ'ଣ କରିଛ ତୁମେ ରାୟବାହାଦୂର ! କାହା ଦାନାରେ ଧୂଳିଦେଇ ତମର ଏ ବିରାଟ କୋଠା ଆଜି ମୁଣ୍ଡ ଟେକିଛି ? ଅତୀତକୁ ଭୁଲିଯାଅ ରାୟବାହାଦୂର ! ବର୍ତ୍ତମାନ ସେଇ ଲକ୍ଷ ଲକ୍ଷ ନିରନ୍ନ ପ୍ରଜାଙ୍କୁ ଆଉ ତୁମର ପଥରଦୁଆରୁ ଫେରାଅ ନାହିଁ । ସେମାନଙ୍କର ବି ପ୍ରାଣ ଅଛି, ସେମାନଙ୍କର ବି ହୃଦୟ ଅଛି ।"

ଚମକି ଉଠିଲେ ରାୟବାହାଦୂର । ଅଶରୀରୀ ସେହି ଅର୍ଦ୍ଧନଗ୍ନ ଛବିଟି ସତେ ଯେପରି ଯୁକ୍ତକର ଆଉଁଳି ତାଙ୍କୁ ପ୍ରାର୍ଥନା କରୁଛି— "କ'ଣ କରୁଛ ତୁମେ, ରାୟବାହାଦୂର—"

ଏ ପୁଣି କ'ଣ ହେଲା ? ଦିନେ ଯେଉଁ ବଂଶୀଧରଲାଲ ପଦାଲିଲସାରେ ନିଜ ବୈଠକଖାନାର କାନ୍ଥଉପରୁ ଗାନ୍ଧିଛବିଟି ଟୋକିନେଇ ଅଳିଆଗଦାରେ ଫିଙ୍ଗି ଦେଇଥିଲେ, ସେ ପୁଣି ଏ ଅନୁରୋଧରେ ନରମି ଗଲେ କିପରି ?

ଯୁଗ ବଦଳି ଯାଇଛି । ରାୟବାହାଦୂରଙ୍କୁ ସେହି ଅନୁସାରେ ନିଜକୁ ବଦଳାଇ ଦେବାକୁ ହେବ । ରାୟବାହାଦୂରଙ୍କର ପ୍ରାଣ ଦୋଳାୟମାନ । ଆଜି ବ୍ରିଟିଶ ସରକାର ନାହାନ୍ତି; ଦେଶ ସ୍ୱାଧୀନ ହୋଇଛି । ରାୟବାହାଦୂରଙ୍କୁ ବେଶ ବଦଳାଇବାକୁ ପଡ଼ିବ । ସେ ଶହିଦ୍ ପୂଜା କରିବେ—ଜାତିର ପୂଜା କରିବେ,—ସମାଜର

ପୂଜା କରିବେ । କିନ୍ତୁ ନ କରି ପାରିଲେ ମଧ୍ୟ କୁଡ଼ି କୁଡ଼ି ଟଙ୍କା ଖର୍ଚ୍ଚ କରି ତାଙ୍କୁ ଅଭିନନ୍ଦନ କରିବାକୁ ପଡ଼ିବ । ଆଉ ସେଇ ଅଭିନନ୍ଦନର ଫଳସ୍ୱରୂପ ରାୟବାହାଦୂର ଉପାଧି ପରିବର୍ତ୍ତେ ସେ ପାଇବେ "ଦେଶଭକ୍ତ", "ଲୋକପ୍ରିୟ" "ଦେଶବନ୍ଧୁ"—ଆଉ ଏମିତି କେତେ ଉପାଧି । ପ୍ରାଣରେ ତାଙ୍କର ଉତ୍କଣ୍ଠା, ମନ ଭିତରେ କେବଳ ଭାବନା; ଆଉ ଭାବନା······

  

"ତୁମେ ତାଜମହଲ ଦେଖିଛ, ଶିଳ୍ପୀ !"

ଗୋଟି ଗୋଟି କରି ସମସ୍ତ କଳାକାରମାନଙ୍କୁ ସେ ପଚାରି ଯାଇଛନ୍ତି ଏହି ପ୍ରଶ୍ନଟି । କାନ୍ଥରେ ଟଙ୍ଗା ହୋଇଛି ଗାନ୍ଧିଜୀଙ୍କର ସେଇ ଯୋଡ଼ହସ୍ତର ଛବିଟି । ସମସ୍ତ ଶିଳ୍ପୀଙ୍କୁ ନିମନ୍ତ୍ରଣ କରାଯାଇଛି । ଯେ ତାଜମହଲ ପରି ମନୋରମ ମନ୍ଦିରଟିଏ ତିଆରି କରି ତା'ରି ଭିତରେ ମାର୍ବଲପଥରରେ ଏମିତି ଗୋଟିଏ ପ୍ରତିମୂର୍ତ୍ତି ତିଆରି କରିଦେବ—ସେହି ପାଇବ ଅଜସ୍ର ପୁରସ୍କାର—ଅଜସ୍ର ଟଙ୍କା ।

"ମୁଁ ପାରିବି"--ବୈଠକଖାନାରେ ଗୋଟିଏ କଣରୁ ଜଣେ ଶିଳ୍ପୀ ଉତ୍ତର ଦେଲେ ।

"କିନ୍ତୁ ମନେ ରଖ ଶିଳ୍ପୀ, ଆଜକୁ ଠିକ୍ ୧୧ ମାସ ପରେ ଗାନ୍ଧିଜୀଙ୍କର ଜନ୍ମ-ଉତ୍ସବ ବେଳକୁ ଏ କାର୍ଯ୍ୟ ଯେପରି ସରି-ଯାଇଥିବ । ସେଇଦିନ ଦେଶର ବଡ଼ ବଡ଼ ନେତାମାନଙ୍କ ଗହଣରେ ଏ ମନ୍ଦିର ଉନ୍ମୁକ୍ତ କରାଯିବ । ମାଗିଖିଆମାନଙ୍କୁ ଭୂରିଭୋଜନ ଦିଆଯିବ । କରିପାରିବ ଶିଳ୍ପୀ ! ତା'ହେଲେ ଦେଶସାରା

ଚହଲ ପଡ଼ିଯିବ, ଆମର ଦୁଆରକୁ କେତେ ବଡ଼ଲୋକ ଆସିବେ ।

ଯୁବକ ଶିଳ୍ପୀ ମଥାନୋଇଁ ସମ୍ମତି ଜଣାଇଲେ ।

× × × ×

ସେଇ ଏକ କମନୀୟ ପ୍ରଭାତ । ମୁକ୍ତେଶ୍ୱରର ସ୍ୱଚ୍ଛ ଝରଣା-ତଟରେ ଶିଳ୍ପୀ ପ୍ରାଣପଣେ ଲାଗିପଡ଼ିଛନ୍ତି । ଝରଣାର ଗୌରିପାଖରେ ପଥର ପାଚେରି । ତା'ରି ଭିତରେ ତରୁଣ ଶିଳ୍ପୀ ଲାଗିପଡ଼ିଛନ୍ତି । ରାୟବାହାଦୂରଙ୍କ ଜମିଦାରୀର ଅଗଣିତ ପ୍ରଜା ଦିନରାତି ଉଜାଗର ରହି କାମରେ ଲାଗିପଡ଼ିଛନ୍ତି । ବେଠି-କେବଳ ବେଠି କରିଯାଅ ପ୍ରଜାଗଣ—ଏ ପୁଣ୍ୟ କାମରେ ତୁମେମାନେ ସାହାଯ୍ୟ କରିବ ନି ତ ଆଉ କରିବ କିଏ ? ପ୍ରତି ସାହିର ଘରପିଚ୍ଛା ଜଣେ ଲେଖାଏଁ ଉପାସ ଭୋକରେ ପଡ଼ି ଏ କାମରେ ସାହାଯ୍ୟ କରୁଛନ୍ତି, ସେ ଯୁଗର କୋଣାର୍କ ବା ଲିଙ୍ଗରାଜ ମନ୍ଦିର ପ୍ରକାଶ ପାଇଲା ପରି ।

× × × ×

ଅକ୍ଟୋବର ଦୁଇ ତାରିଖ ! ଦେଶ ସାରା ଚହଲ ପଡ଼ି-ଯାଇଛି । ଆଜି ଏ ବିରାଟ ମନ୍ଦିର ଉଦ୍‌ଘାଟନ ଉତ୍ସବ ।

ରାୟବାହାଦୂରଙ୍କ ଦୁଆରେ ଆଜି ମେଳା ନା ମେଳଣ କ'ଣ ? ଦଳ ଦଳ ହୋଇ ସହରଯାକ ମାଗିଖିଆ, କୁଷ୍ଠରୋଗୀ କେତେବେଳୁ ଆସି ଅପେକ୍ଷା କରି ବସିଛନ୍ତି । ଏକସ୍ୱରରେ ସେମାନେ ଦୁଆ ଧରିଛନ୍ତି--

—"ଦାତାଙ୍କର ଜୟ ଜୟ--ଗଣ୍ଡାଏ ମିଳିଯାଉ ମଣିମା--ଦାତାଙ୍କର ଜୟ ଜୟ"—

ଯେଉଁ ଲୋକଟା ଆଗରେ ଠିଆ ହୋଇ ଏ ଦୁଆ ଆରମ୍ଭ କରିଛି—ଇସ୍ କି କଦର୍ଯ୍ୟ ତା'ର ରୂପ !—ଦୁଇ ହାତର ପାପୁଲି ଉପରେ ନାଲି ଦାଗ, ମେଞ୍ଚା ମେଞ୍ଚା ମାଉଁସ ଛୁଡ଼ିଗଲା ପରି ଦିଶୁଛି । ମୁହଁ ଉପରେ ନାଲି ନାଲି ଛଉ । ସେଇ ଗୋଟିଏ ପଦ ।

"ଦାତାଙ୍କୀକ ଜୟ ଜୟ —ଗଣ୍ଡାଏ ମିଳିଯାଉ ମଣିମା ।"

ବିମୀତ ଭାବରେ ଶିଳ୍ପୀ ଆସି ପ୍ରଣତି ଜଣାଇଲେ । —"ସବୁ ସରିଯାଇଛି ମଣିମା; କେବଳ ଛୋଟ ଗୋଟିଏ ଗୋରଚନା ବିନ୍ଦୁ ଆପଣ ବାପୁଜୀଙ୍କ ମଥା ଉପରେ ପିନ୍ଧାଇଦେବେ ।" ଶିଳ୍ପୀଙ୍କୁ ଆଦେଶ ଥିଲା, ସବୁ ସରିବା ପରେ ରାୟ ବାହାଦୂର ତାଙ୍କର କଳ୍ପିତ ମୂର୍ତ୍ତି ଦେଖିବେ, ତା'ର ପୂର୍ବରୁ ନୁହେଁ । ରାୟବାହାଦୂରଙ୍କ ମନରେ ଅପୂର୍ବ ଆନନ୍ଦ । ଆଜି ଏତେଦିନ ପରେ ତାଙ୍କର ଭାବନା ମାର୍ବଲପଥର ଉପରେ ରୂପ ପାଇଥିବ । କେତେ ବଡ଼ ବଡ଼ ନେତାଙ୍କୁ ଡକାଯାଇଛି, ସେମାନେ ଆସିବେ । ଏଇ ମନ୍ଦିର ତୋଳାଇ ରାୟବାହାଦୂର ଯେପରି ଅମରତ୍ୱ ଲାଭ କରିବେ । ଦେଶସାରା ଖବର କାଗଜରେ ତାଙ୍କର ପ୍ରଶଂସା ପ୍ରଚାରିତ ହେବ, ପ୍ରାଣରେ ତାଙ୍କର ଉତ୍କଣ୍ଠା । ସଶଙ୍କ-ହୃଦୟରେ ଶିଳ୍ପୀ ମୁକ୍ତାଝରର ଫାଟକ ଖୋଲିଲା । ପାହାଚ ପରେ ପାହାଚ ଉଠି ଉପରକୁ ଚାଲିଲେ । ଆଉ ବାରଟି ପାହାଚ ପରେ ତାଙ୍କର କଳ୍ପିତ ତାଜମହଲ ହସି ଉଠୁଛି । ଗୋଟିକ ପରେ ଗୋଟିଏ —ଏଗାରଟି ପାହାଚ । ତାପରେ ଗୋଟିଏ ଥରିଲା ସ୍ପର୍ଶ ସେଇ ଦୁଆର ଦେହରେ ଲାଗିଗଲା । ତୋରଣ ଦୁଇ ପାଖକୁ ଅପସାରିତ ହେଲା । ମନ୍ଦିରର ପ୍ରଥମ କୋଠରୀ ଭିତରେ ଆଖି ଆଗରେ ଦେଖା-ଦେଲା—

—ଈଶ୍ୱର ଆଲ୍ଲା ତେରେ ନାମ,
ସବ୍‌କୋ ସନ୍‌ମତି ଦେ ଭଗବାନ୍ ।

ରାୟବାହାଦୂର ନୀରବ ।

ଏ କ'ଣ, ରାୟବାହାଦୂର ! ଏମିତ ସ୍ଥାଣୁ ହୋଇ ଠିଆହୋଇ ରହିଲେ ଯେ ! ତା'ପରେ ଆଉ ଗୋଟିଏ କୋଠରୀ ମାତ୍ର । ଯାଅ ଧୀରେ, ଖୁବ୍ ଧୀରେ, ଏଇ ବଜନ ପାହାଚ ଅତିକ୍ରମ କରି ଯାଅ । ତା'ପରେ ପାଇବ ତୁମର ନମସ୍ୟ ବାପୁଜୀଙ୍କୁ । ଗୋରଚନାର ଗୋଟିଏ ବିନ୍ଦୁ ତାଙ୍କର ମଥା ଉପରେ ପିନ୍ଧାଇ ଦେଇ ଫେରିଆସିବ ତୁମେ । ତା'ପରେ ଆସିବେ ମୁଖ୍ୟମନ୍ତ୍ରୀ—ଆସିବେ ଦେଶଭକ୍ତ—ଆସିବେ ନେତା—ଆଉ ଆସିବେ ସରକାରୀ କର୍ମଚାରୀ । ମନ୍ଦିର ଉନ୍ମୁକ୍ତ ହେବ, ଯାଅ—ଯାଅ ! !

ରାୟବାହାଦୂର ନିଶ୍ଚଳ । ପ୍ରଥମ କୋଠରୀର ଚାରିକାନ୍ଥରେ ମାର୍ବଲପଥର ଉପରେ ଗାନ୍ଧୀଙ୍କର ଉପଦେଶାବଳୀ । ତା' ଉପରେ ସେ ଥରେ ଆଖି ବୁଲାଇ ନେଲେ । ଏ କ'ଣ ଲେଖାଅଛି ?

—"ମୁଁ ସବୁଠାରୁ ଦରିଦ୍ର ମେହେନ୍ତରର ପାଦଧୂଳି ଗ୍ରହଣ କରିପାରେ; ମାତ୍ର ସମ୍ରାଟ ପାଖରେ ମୁଣ୍ଡ ନୁଆଁଇ ଠିଆ ହେବାକୁ ରାଜି ନୁହେଁ—" ତା' ପରେ ଆଉ ଗୋଟିଏ ପଦ—

"ଯେ ସ୍ୱଇଚ୍ଛାରେ ନିଜର ଦୋଷ ସବୁ ଅନ୍ୟ ଆଗରେ ପରିଷ୍କାର କରି କହିଦିଏ ଏବଂ ଆଉ କରିବ ନାହିଁ ବୋଲି ପ୍ରତିଜ୍ଞା କରେ, ସେ ସବୁଠାରୁ ବଳି ପବିତ୍ର ପ୍ରାୟଶ୍ଚିତ୍ତ କରେ ।"

ଏଇ କେତୋଟି ପଦ ରାୟବାହାଦୂରଙ୍କ ଅନ୍ତର ଭିତରେ ଆଘାତ କରୁଛି । ଏ କ'ଣ ତେବେ ଗାନ୍ଧି ପୂଜା !! ଶହ ଶହ ନିରୀହ ପ୍ରଜାଙ୍କର ଝାଳବୁହା ଧନରେ ଯେଉଁ ମନ୍ଦିର ଆଜ ମଥା ଟେକୁଛି, ସେ ତେବେ କ'ଣ ଗାନ୍ଧିମନ୍ଦିର ! !

—"ନାଁ—ନାଁ ଶିଳ୍ପି—ମୁଁ ଆଉ ଆଗକୁ ଯାଇପାରିବ ନାହିଁ । ମୋତେ ଫେରାଇ ନିଅ ଶିଳ୍ପି—ମୁଁ ପ୍ରାୟଶ୍ଚିତ୍ତ କରିବ । ମୋର ଅଜ୍ଞାତ ପାଇଁ ମୁଁ ପ୍ରାୟଶ୍ଚିତ୍ତ କରିବ । ପ୍ରାୟଶ୍ଚିତ୍ତର ବାଟ ?"

—"ଏଇ ନିଅନ୍ତୁ, ଏଇ ଗୋରଚନା ଟିକକ—" ଶିଳ୍ପୀଙ୍କ ହାତରୁ ଗୋରୋଚନା ପାବଟି ଧରୁ ଧରୁ ରାୟବାହାଦୁର ଭିତର ଦୁଆର ଖୋଲିଲେ । ଏଇ ଅଶରୀରୀ ପଥରଖଣ୍ଡିକ ଦେହରେ ବାପୁଜୀ ଯେପରି ଜୀବନ୍ତ ହୋଇ ଉଠିଛନ୍ତି । ରାୟବାହାଦୁରଙ୍କର ହାତ ଦୁଇଟି ଗାନ୍ଧୀଜୀଙ୍କ ଉଦ୍ଦେଶ୍ୟରେ ପ୍ରଣାମ ଜଣାଇବା ପୂର୍ବରୁ ତାଙ୍କର ଆଖି ପଡ଼ିଲା ସେଇ ପ୍ରତିମୂର୍ତ୍ତି ଉପରେ ।

—ଏ କ'ଣ ! ସେ ମୂର୍ତ୍ତି ରାୟବାହାଦୁରଙ୍କୁ ଆଗରୁ ପ୍ରଣତି ଜଣାଇଛି । ରାୟବାହାଦୁର ଝାଉଁଳି ପଡ଼ିଲେ । ସତେ ଅବା ସେଇ ପ୍ରତିମୂର୍ତ୍ତି ଭିତରେ ଗୋଟିଏ ଅଶରୀରୀର ଆତ୍ମା ସ୍ୱର୍ଗରେ ଥାଇ ରାୟବାହାଦୁରଙ୍କୁ ହାତଯୋଡ଼ି ଅନୁରୋଧ କରୁଛି, "ଏ କ'ଣ କରୁଛ ରାୟବାହାଦୁର ! ଏ କ'ଣ କରୁଛ ରାୟବାହାଦୁର !"

"ପ୍ରଥମେ ଅନ୍ୟର ପ୍ରାଣ ଚହ୍ଲିବାକୁ ଶିଖ—ଅନ୍ୟ ପ୍ରତି ସହାନୁଭୂତି ଦେଖାଅ, ତା' ପରେ ମୋର ପୂଜା କରିବ—ତା'ପରେ ଗଢ଼ିବ ଗାନ୍ଧି ମନ୍ଦିର !"

ଆଉ ଗୋଡ଼ ଆଗକୁ ଚଳୁ ନି । ଗୋରଚନା ଟିକକ ମଧ୍ୟମା-ଅଙ୍ଗୁଳି ଅଗରେ ଶୁଖିଗଲାଣି । ରାୟବାହାଦୁର ଫେରିଆସିଲେ । ପଛରେ ତାଙ୍କର ପଡ଼ିରହିଲା ମୁକ୍ତାଝରର ସେହି ପ୍ରକାଣ୍ଡ ପ୍ରାଚୀର । ତା'ରି ଭିତରେ ପଡ଼ି ରହିଲା ତାଜମହଲ ଆଉ ମାର୍ବଲ ବାପୁ । ଘର ଆଗରେ ସେଇ ବୁଭୁକ୍ଷୁ ଦଳର କରୁଣ ଚିତ୍କାର ।

"ଦାତାଜୀଙ୍କ ଜୟ ଜୟ—ଦାତାଜୀଙ୍କ ଜୟ ଜୟ—ଗଣ୍ଡାଏ ମିଳିଯାଉ ମଣିମା—"

ଏ ସବୁ ଭିତରେ ରାୟବାହାଦୂର ନିଜକୁ ହଜାଇ ଦେଇଥିଲେ । ମନ ଭିତରେ ତାଙ୍କ ସେଇ ଗୋଟିଏ ପ୍ରଶ୍ନ--ଗୋଟିଏ ଅଶରୀରୀ ଆତ୍ମାର ନରମ ଅନୁରୋଧ—

"ପ୍ରଥମେ ଅନ୍ୟର ପ୍ରାଣକୁ ଚହ୍ନିବାର ଶିଖ--ତା'ପରେ କରିବ ଗାନ୍ଧିପୂଜା—"

ମନ୍ଦିର ଉଦ୍‌ଘାଟିତ ନ ହୋଇ ରହିଲା । ଆଜିକାଲି ସେ ମୁକ୍ତାଙ୍ଗର ସେଇ ମନ୍ଦିରର ଭିତରକୁ ମଧ୍ୟ ଲୋକେ ଯାଆନ୍ତି । କିଏ ହୁଏତ ପଇସାଏ ଦି'ପଇସା ସେଇ ମାଗିଖିଆଙ୍କ ଖଣ୍ଡିଆ ହାତରେ ପକାଇ ଦିଅନ୍ତି ।

ମାତ୍ର ରାୟବାହାଦୂର ଆଉ ସେ ମନ୍ଦିର ଭିତରକୁ ଯାଇ ନାହାନ୍ତି । ଦୂରରୁ ଅତି କ୍ଷୀଣକଣ୍ଠରେ ଶୁଭେ –

"ଦାତାଜୀଙ୍କ ଜୟ ଜୟ--ଦାତାଜୀଙ୍କ ଜୟ ଜୟ--ଗଣ୍ଡାଏ ମିଳିଯାଉ ମଣିମା !"

---

# ଅନ୍ଧାରୁଆ

## ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ

ବେକରେ ହାଡ଼ ବାନ୍ଧିଲି । ଦାନ୍ତରେ ଝରଣ ଦେଲି । କଉ ଆଉ ଥାଉ ଖନା ହୋଇ ପଡ଼ିଲ ପଧାନ ବାରଦୁଆର ଶୁଣ୍ଢି ପିଣ୍ଡା ବୁଲି ଖପର୍ ପଡେଇଲି ।

କଳା ମିଚ ମିଚ ଅନ୍ଧାର ମଝିରେ ତା'ର ଶଣ୍ଢା ଶଣ୍ଢା କାଳିଆ ବାହା ଦ'ଟାକୁ ଉପରକୁ ଟେକ ଗାଆଁ ମୁଣ୍ଡ ଦୋକାନ ପାଖରେ ବସି ପଡ଼ିଲ ଗଁ ଗଁ ହୋଇ ସମସ୍ତିଙ୍କି ମନକଥା କହିବାକୁ ଚେଷ୍ଟା କରେ, ନାନା ଅବଲ୍ୟ କାଢ଼ି ଗହକମାନଙ୍କ ଅଣ୍ଟାରୁ ପଇସାଏ ଅଧଲାଏ ଖସେଇବ ବୋଲି ବାହାରେ । କିଏ ଦିଏ, କିଏ ବା ମୁହଁ ମୋଡ଼ି ଚାଲିଯାଏ । ଅଧିକାଂଶ ତା ଆଡ଼କୁ ଦାନ୍ତ ଦ'ଧାଡ଼ିକ ଦେଖାଇ ଖିଁ ଖିଁ ହୋଇ ହସନ୍ତି--ଖଟେଇ ହୁଅନ୍ତି । ପଡ଼ିଲ ମାଟିରେ ଗଡ଼େ । ବାଲମୁକୁଳା କରି ହାତ ଠାରି କେତେ କ'ଣ କହେ । ସମସ୍ତେ କହନ୍ତି, 'ପନ୍ଦିଜ କରୁଚି' ।

ତା'ର କାଳିଆ ଦେହ, କୋଉରି ଲୁଗା, ଆବୁଡା ଖାବୁଡ଼ା ଓସାରିଆ ଛାତିଟା କଳା ରାତି ସଙ୍ଗରେ ମିଶିଯାଇ ଜମା ବାରି ହୁଏ ନାହିଁ ।

ଅଝଟ ପିଲାଏ ମା’ଠୁ କ୍ଷୀର ନ ଖାଇଲେ ମା’ମାନେ ଭୟ ଦେଖାଇ କହନ୍ତି—“ହେଇ, ହେଇ ଅନ୍ଧାରୁଆ ଆଇଲାଣି । ଗାଆଁ-ମୁଣ୍ଡେ ବସି କଭ ହାଲୁ ହାଲୁ କରୁଚ ।”

ପହଲା ପୁରସ୍ତମ ଯିବ ।ବାଟରେ ସଞ୍ଜ ହୋଇଗଲେ ସେ ଗାଆଁରେ ରାତିକ ପାଇଁ ଥକଯାଏ । ହଅଁ ବୁଡ଼ିଯିବା ଆଗରୁ କ’ଣ ହ’ଟା ପାଟିରେ ପକାଇଦେଇ କାହା ପିଣ୍ଡାରେ କୁଟା ଗୋଟ୍ଟାଏ ପାରି ଗୃରକାତ ନମ୍ଭେଇ ପଡ଼ିଯାଏ । ସେ ଯେଉଁ ଗାଁକୁ ଯାଏ—ସେ ଗାଁରେ ଅନ୍ଧାରୁଆ ଆଇଚ ବୋଲି ଗୃରଆଡ଼େ ହୁରି ହକରା ପଡ଼ିଯାଏ । ତା’ ପଛରେ ଟୋକାଏ ତାଳି ମାରି ଗୋଡ଼ାନ୍ତି—କୁଲା କୁକୁରଗୁଡ଼ାକ ଘେଉ ଘେଉ ହୋଇ ତାକୁ ଖେଙ୍କାରି ମିଶନ୍ତି, ପୁଣି ସୁଁ ସୁଁ କରି ତା ଗୋଡ଼ ସନ୍ଧରେ ପଶି ପରସ୍ତେ ତାକୁ ଶୁଂଘି ଯାନ୍ତି ।

ଅନ୍ଧାରୁଆ ହନଯାକ ବାଟ ଗୃଲେ—ସଞ୍ଜବୁଡ଼େ ଭିଖ ମାଗେ ।

ଅନ୍ଧାର ରାତି । ପେଟରେ ହେଲା ମାଛିକନିଆ ପରି କଳା ମେଘର ତଳି ପେଟଟା ଓହଳି ପଡ଼ିଚ । ତା’ରି ଭିତରେ ଜଳନ୍ତା ଅନ୍ଧାର ପରି ବାଡ଼ ଖଣ୍ଡିକ ଧରି ଅନ୍ଧାରୁଆ ଗୃଲେ······ ।

ବେଳେ ବେଳେ ଅନ୍ଧାରୁଆ ସ୍ୱପ୍ନ ଦେଖେ······ ।

ପାଚିଲା ଖେତରେ ନହଡ଼ା ମାରୁଚ । ଭେଣ୍ଡିଆ ଭେଣ୍ଡିଆ ଧାନ ଗଛର ଅସୁମାରି ସରୁ ସିଆରି ଭିତରେ ତମ୍ପସାପ, କଙ୍କଡ଼ା-ବିଛା ଆଉ ତେଲୁଣୀ ପୋକଙ୍କର ମେଳା ବଇଚ । ଗୃରଆଡ଼େ ଆଇଁଷିଣିଆ ଗନ୍ଧ ପାଇ ମାଟିଆ ଚଲିଗୁଡ଼ାକ ଚେକ ଚେକ ହୋଇ ଉପରେ ଉଡୁଛନ୍ତି ।

ସେଇ ମେଘ ଅନ୍ଧାର ଘଡ଼ିରେ ବିଲ ମଝିରେ ଗୋଟାଏ ଘଡ଼ିଆର କରି ଅଁଟା ଖଣ୍ଡେ ଜାଳି ପଦ୍ମଲି ବିଲ ଜଗିଚି ।

ଧାନଗଛ ମୂଳରେ କୁଢ଼ା ହୋଇଚି କୁଢ଼କୁ କୁଢ଼ ଖତ । ଖତ ତ ନୁହେଁ, ହାଡ଼ । ପଦ୍ମଲିର ହାଡ଼—ତା ସ୍ତ୍ରୀ ଗେଲବୋଉର ହାଡ଼...... ।

ପଦ୍ମଲିର ମନେ ପଡ଼େ କାଲିମରି ଜାଡ଼ଦିନେ କମିତି ବଡ଼ ଅନ୍ଧାରୁ କେଉଟଘର ଚୂଡ଼ା ପାହାର ନ ଶୁଭୁଣୁ ଗେଲବୋଉ ଥୁ ରୁଥୁରୁ ହୋଇ ଟାଙ୍ଗି, ଟୋକର, ଡୋଟା, ପାଟ ବୁଲି ଗାଣ୍ଡୁଆକୁ ଗାଣ୍ଡୁଆ ଗୋବର ବୋହି ଆଣି ବାଡ଼ପଟ ଖତଗଦାରେ ଜମା କରେ... । ଆଜି ପଦ୍ମଲି ନିଜ ଦେହର ନହୁ ପାଣି କରି ସେଇ ଖତତକ କୁଟି ଓଦରି ଓଦରି କରି ନେଇ ବିଲରେ ଜମା କରିଦେଇ ଆସେ... ।

ଖାଲି ସେତିକ ନୁହଁ; ପଥର ପରି ଟାଣ ବିଲ ମାଟିରେ ନଙ୍ଗଳ କଣ୍ଠି ଧରି ହଳ କଲାବେଳେ ଯେ କି କଷ୍ଟ, ତା ମନରେ ପଡ଼ିଲା-ବେଳେ ପଦ୍ମଲିର ହାଡ଼ ଭିତର କ'ଣ ହୋଇଯାଏ । ତାଙ୍କୁ ଉପରେ ନିଆଁ ପିଣ୍ଡୁଳା ପରି ସୂର୍ଯ୍ୟ, ତଳେ ତତଲା ମାଟି, ଗୋଡ଼ ଦ'ଟା ସିଝି ଯାଇ ପରସ୍ତକୁ ପରସ୍ତ ଚମ ଗୁଡ଼ି ଯାଇଚି...... ।

ପଦ୍ମଲିର ଏତେ ହାଡ଼ଭଙ୍ଗା ରକ୍ତମିଶା ମିହନତକୁ ସାର୍ଥକ କରି ଯେଉଁଦିନ ପାଚିଲା କ୍ଷେତର ଅସୁମାରି ଧାନଗଛ ଗହଳରେ ମାଙ୍କି ପବନର ନୁଚୁକାଳି ଖେଳ ନାଗିଲା, ସେ ଦିନ ପଦ୍ମଲି ଜୀବନରେ ଏକ ମଉଛବ । ସେ ସବୁ ଭୁଲି ଅନାଇଁ ରହିଲା ସେଇ ଦରପାଚିଲା କିଆରିଆଡ଼କୁ ।

ତା'ପରେ ହଠାତ୍—

ପହଲି ଭାବିଲା ।

କଟିମିଟିଆ ଅନ୍ଧାର । ମଗୁଣିର ମାସ ହିମାଳ ପବନ କଲିଜା ଭିତର ଥରାଇ ଦେଇ ଯାଉଚି । ପହଲି ଭାଡ଼ି ଉପରେ ହେଁସ ଖଣ୍ଡେ ଘୋଡ଼ି ହୋଇ ପେଟେଇ ପଡ଼ି ଶୋଇ ବଟୁଆରୁ ଚୂନପନ ଟିକିଏ ଆଣି ନେଡ଼ିରେ ଦଳୁଚି । ବିଲ ଭିତରେ ଗୁବୁରୁ ଗୁବୁରୁ ଶବ୍ଦ ଶୁଣାଗଲା । ପାଣି କାଦୁଅରେ ଧାନଗଛଗୁଡ଼ାକ ଚକଟି ଦେଇ ଗୋଟାଏ କଏ ଗୁରୁଆଡ଼ ମଡ଼ି ଦେଇ ଯାଉଚି ଯିମିତି ଅବା ! ପହଲି ଭାବିଲା ବାରହା କି ଭାଲୁ ହୋଇଥିବ !

ସେ ରାଗରେ ଖଣ୍ଡେ ମୂଳ ବାଉଁଶ ଧରି ଉଠିଲା ।

ଧାନ ଗଛର କାଳିଆ ଛାଇ ଚିରି ପାଣିପିଆଗୁଡ଼ାକ ଚକ୍ ଚକ୍ ଦିଶୁଚି । ବହଳିଆ ମେଘ ଅନ୍ଧାର ଭିତରେ ପହଲି ଆଖିରେ ପଡ଼ିଗଲା ଗୋଟିଏ ମସ୍ତବଡ଼ କାଳିଆ ଜନ୍ତୁ । ନାକପୁଡ଼ାରେ ଅଣନ୍ତୁଶ ପବନ ବହୁଚି ।

ପହଲି ତା ପଛେ ପଛେ ଗୋଡ଼ାଇଲା, ମାତ୍ର ସେଇ କାଳିଆ ଛାଇଟା ଧାନଗଛଗୁଡ଼ାକୁ କୁନ୍ଦ ଚକଟି ଦୌଡ଼ି ଦୌଡ଼ି ଏଣେ ତେଣେ ପଳେଇଗଲା ।

ଗୋଟିଏ ଧାନଗଛ ନଷ୍ଟ ହୋଇଯିବା ସଙ୍ଗେ ସଙ୍ଗେ ପହଲି ଦେହରୁ ପୋଷେ ରକ୍ତ ଶୁଖି ଯାଉଥିଲା ।

ଆଗରେ ଗୋଟାଏ ଖାଲ । ଜନ୍ତୁଟା ଆଉ ଯାଇ ପାରିଲା ନାହିଁ—ମୁହଁ ବୁଲାଇ ପଛକୁ ଫେରି ଅଇଲା । ପହଲିର ବାଉଁଶ ଠେଙ୍ଗା ଦୁମ୍ କରି ଯାଇ ବାଜିଲା ତା ତାଳୁରେ । ଠିକ୍ ତା ତାଳୁ ଉପରେ ।

ପଦ୍ମଲ ବିଜୁଳି ଆଲୁଅରେ ଦେଖି ପାରିଲା, ବିଟା ବଡ଼ ବଡ଼ ମୁନିଆଁ ଶିଙ୍ଗ କେନା ମେଲାଇ ଉପରକୁ ବାହାରିଛି ।

ନାଞ୍ଜି ଠେକ, ଫଁ ଫଁ ନିଶ୍ୱାସ ଛାଡ଼ ଜନ୍ତୁଟା ପଳାଇଗଲା କାଇକାଛୁଆ ହୋଇ ଏକ ମୁହଁରେ; ପଦ୍ମଲ ଶୁଣି ପାରିଲା, କିଛି ଦୂର ଯାଇ ସେଇଟା ଗୋଟାଏ କଣ୍ଟାବୁଦାରେ ଭୁଷ୍‌କିନା ପଡ଼ିଗଲା— ଆଉ ପଙ୍କ କାଦୁଅ ଭିତରୁ ଉଠି ପାରିଲା ନାହିଁ ଜମା ।

ପଦ୍ମଲ ଘରକୁ ଫେରିଆସି ନିଶ୍ଚିନ୍ତରେ ଶୋଇଲା । ସେ ରାତିରେ ଶୋଇ ଶୋଇ ସ୍ୱପ୍ନ ଦେଖିଲା ଗୋଟାଏ ମସ୍ତବଡ଼ କାଳିଆ କଙ୍କାଳ,—ଚାରିପଟେ ତା'ର କାଉ ବେଢ଼ିଛନ୍ତି । ଗୋଟାଏ ଧୋକଲା ଶାଗୁଣା ସେଇ ମଡ଼ାର ନାହିମୁଣ୍ଡା ଭିତରେ ଥଣ୍ଟ ପୂରେଇଛି । ସେଇ ମଡ଼ାର ଚାରିଟାଯାକ ଖୁରାକୁ କିଏ ହାଣି ଦେଇଛି କୁରାଢ଼ିରେ ଟୁକ୍ରେଟ ଟୁକ୍ରେଟ କରି ।

ପୁରୋହିତେ ପୋଥି ଦେଖିକରି କହିଲେ, ତ୍ରିପାଦ ଦୋଷ ଲାଗିଛି । ପୁରୁଷୋତ୍ତମ ଯାଇ ମୁକ୍ତିମଣ୍ଡପରେ ପ୍ରାୟଶ୍ଚିତ୍ତ ନ କଲେ ଏ ପାତକ ଛାଡ଼ିବ ନାହିଁ । ପ୍ରାୟଶ୍ଚିତ୍ତ ନ ହେବାଯାଏ ଦାନ୍ତରେ ତୃଣ ଦବ, କଥା କହିବ ନାହିଁ ।

ଗାଁଆଯାକ ଫୁସ୍‌ଫୁସ୍ ହେଲେ···"ପଦ୍ମଲ ହାଡ଼ ବାନ୍ଧିବ । ଗୋରୁ ମାରିଚି ।"

ସେ ଦିନର ପଦ୍ମଲ ଆଉ ଆଜିର ଅନ୍ଧାରୁଆ, କେତେ ତଫାତ୍ ?

ପହଲ ଧ୍ୱବେ, ସେ ଦ୍ୱନ ପଦ୍ମପୁରାଣ ପଢ଼ି ପୁରୋହିତ ନଧି ମିଶ୍ରେ ତାଙ୍କୁ କ'ଣ କହିଥିଲେ ! ଭୟରେ ମୁହଁଟା ତା'ର ଗୋଟଲି ପଡ଼ିଯାଏ । ତା ଆଖି ଆଗରେ ନାଚିଯାଏ ଗୋଟାଏ ମସ୍ତବଡ଼ ଜଳନ୍ତା ଚୁଲି—ବଡ଼ ବଡ଼ ହଣ୍ଡାରେ ତେଲ କଡ଼ କଡ଼ ହୋଇ ଫୁଟୁଚି । ସେ ଏପଟକୁ ସେପଟ ଗୃହେଁ, ଥର ଉଠେ । ପୁଣି ତା ଆଖି ଆଗରେ ନାଚିଯାନ୍ତି ଦୁଇଟା ମହିଷିମୁହାଁ ଯମଦୂତ । ସେଦ୍ୱନ ତାଙ୍କର ଚିହ ତାଙ୍କୁ ପୁରୋହିତ ଆପଣେ ଦୟା କରି ପୁରାଣରୁ ବାହାରକରି ମିଞ୍ଜି ମିଞ୍ଜି ଫାପ ଆଲୁଅରେ ଦେଖେଇ ଦେଇଥିଲେ । ତା'ର ସେ ଭଜନରଙ୍ଗିର ଚିହ୍ନପଟଟା ମନେ ପଡ଼େ । କେଡ଼େ କେଡ଼େ ଆଖି, କମିତି ଶିଙ୍ଗ, ହାତ ଦ'ଟା କମିତି ମାଙ୍କଡ଼ ହାତ ପରି ରୁମ ସାଲୁବାଲୁ ହୋଇଚି, ନଖଗୁଡ଼ାକ କମିତି ମୁନିଆ ମୁନିଆ ! ସେ ଡରୁଆ ପିଲାଙ୍କ ପରି ନିଦରେ ବଳାବଳେଇ ଉଠେ—

"ଆଇଲା, ଆଇଲା, ହୋଇ ଆଇଲା !"

ଦ୍ୱନେ ଦ୍ୱନେ ବାଟ ଗୃଲୁ ଗୃଲୁ ନିଗୁଟିଆ ଦ୍ୱପହରେ ସେ ଥକା ହୋଇ ଗୋଟିଏ ଗଛମୂଳରେ ବସିପଡ଼େ । ଗୃରିଆଡ଼େ ଶୁନ୍‌ଶାନ୍—ଖାଁ ଖାଁ କରୁଥାଏ । ତା'ର ମନେ ପଡ଼େ ତଳ ଗାଁ ରମା ଗଉଡ଼ର କଥା । ଗୋରୁ ମାରି ନୁଚେଇଥିଲା; କନ୍ତୁ ମଲାବେଳକୁ ଜଭରେ ଘା ହୋଇଗଲା, ପୋକମାଛି ହେଲା, ନାଙ୍ଗୁଡ଼ା ପୋକ ପାଟିରେ ସାଲୁ ବାଲୁ ହୋଇ ଗୃଲଲେ । କେତେ ଗୁହମୁତ, ରକ୍ତପୂଜ ହୋଇ ସେ ଘାଣ୍ଟି ଚକଟି ହେଲା । ତେବେ ହେଲେ କ'ଣ ତା'ର ପ୍ରାଣ ଗଲା !

ଶେଷରେ ସାହି ଲୋକେ ପଚାରିଲେ—କିରେ ରମା, କ'ଣ କରିଚୁ କହିଦେ, ନୋଇଲେ ସ'ଜରେ କ'ଣ ପ୍ରାଣ ଯିବ ?

ସାମା ମାନିଗଲା । ଗୋରୁମାରିଥିବା କଥା କହିଦେବା ମାତ୍ରକେ ତା'ର ହିକ୍‌କା ଉଠିଲା । ତିନିଥର ଗୋରୁଙ୍କ ପରି ହମ୍ବାଳି ଛାଡ଼ି ତା'ଠୁ ପ୍ରାଣବାୟୁ ଉଡ଼ିଗଲା ।......

ପହଲି ଆଉ ଭାବି ପାରେ ନାହିଁ । ତାକୁ ଶୁଣାଯାଏ ଗୋଟାଏ ମାରଣା ଗୋରୁ ଯିମିତି ଖୁବ୍ ଦୂରରେ ହେଣ୍ଟାରି ଛାଡ଼ୁଛି । ସେ ଭୟରେ ଗଛଟାକୁ କୁଣ୍ଢାଇ ଧରେ ।

ନିକଟରେ ହୁଏତ ଗୋଟିଏ ଦିଓଟି ଗାଈ ଚରୁଥାନ୍ତି । ଧଳା, କଳା, କସରା ବାଛୁରୀଗୁଡ଼ିକ ଚଲ୍‌ମାରି ତା'ଙ୍କ ଚାରିପାଖେ ନାଚୁଛନ୍ତି । ପହଲିର ମନେ ହୁଏ, ସେମାନେ ଯିମିତି ତାକୁ ଶିଙ୍ଗ ଉଁଚେଇ ମାରିବାକୁ ଆସୁଛନ୍ତି । ସେ ବାଡ଼ି ଖଣ୍ଡିକ ଧରି ଛିଡ଼ାହୁଏ—ଭୟତ୍ରସ୍ତ ଆଖିରେ ଇଆଡ଼ିକି ସିଆଡ଼ିକି ଚାହେଁ ।

ଦିନେ ଦିନେ ରାତିରେ ପହଲି ସପନ ଦେଖେ, ଗୋଟାଏ ମଲା କାଳିଆ ଗୋରୁ ପେଟ ଫୁଲେଇ ତାଙ୍କ ଅଗଣାରେ ଶୋଇଚି । ତା' ପେଟ ଭିତରେ ଗୋଟେ କଅଁଳା ବାଛୁରୀ । ଗେଲିବୋଉ ଚୂଲିମୂଳରେ ବସି ଭୁନି ହୋଇ କାନ୍ଦୁଚି । ଆଉ ତା'ର ମଲାପିଲା ଗେଲିଟା ପୁଣି ବଞ୍ଚିଲାଣି । ସେ ବାଆ ବାଆ ବୋଲି ଚାରିଆଡ଼େ ତାକୁ ଖୋଜି ବୁଲିଚି । ପହଲିର ନିଦ ଚାଉଁକିନା ଭାଙ୍ଗିଯାଏ । ସେ ଉଠି ବସେ । ଦୂରରେ ଜଣାଯାଏ, ଯେମିତି ସାଁ ସାଁ ହୋଇ ଗୋଟିଏ କ'ଣ ଚରୁଚି ।

ଦିନେ ଦିନେ ବାଟ ଚାଲୁ ଚାଲୁ ହଠାତ୍ ପହଲି ଥକା ମାରି ଛିଡ଼ା ହୋଇଯାଏ । ତା'ର ମନେ ହୁଏ, ପଛରୁ ତାକୁ ଯିମିତି କିଏ ଡାକୁଚି । ଗୋଜିଆ ଗୋଜିଆ ଶିଙ୍ଗ—ହାତରେ ଗୋଟାଏ ବାଘୁଆ

ଫାଶପକା ଦଉଡ଼ି । ତା'ର ମନେ ପଡ଼ିଯାଏ ଗ୍ରାମ ଗଉଡ଼ର ମୁହଁ । ରକ୍ତ, ପୂଜ, ଲଙ୍ଗୁଡ଼ିଆ ପୋକ ! କିନ୍ତୁ ମନକୁ ମନ ବୁଝାଇ ସେ ପୁଣି ବାଟଚାଲେ । ଶହେଥର ବଡ଼ଠାକୁରଙ୍କ ନାଁ ସୁମରଣା କରେ ।

ପୁରୀ ବଡ଼ ଦାଣ୍ଡ । ଶହଶହ କୁଷ୍ଠରୋଗୀଙ୍କ ମେଳରେ ପହଲି ବି ବସି ଖପରଖଣ୍ଡିକ ପତାଇ ଭିକ ମାଗୁଛି । ବଡ଼ ଦେଉଳ ଉପରେ ବଡ଼ଠାକୁରଙ୍କ ପତିତପାବନ ନେତ ଉଡ଼ୁଥାଏ । ପହଲି ଏକା-ଗ୍ରହାରେ ସେଇଆଡ଼କୁ ଅନାଇରହେ । ତା ମନରେ ପୁରୀ ବଡ଼ଦାଣ୍ଡ ଛୁଇଁବା ଦିନୁ ଟିକିଏ ସାହସ ଆସିଲାଣି । ସେ ଆଉ ପୂର୍ବପରି ବଳାବଳିଲାଇ ଉଠୁ ନାହିଁ କି ଡିଆରେ ଭୟଙ୍କର ସ୍ୱପ୍ନ ଦେଖି ଚମକି ପଡୁନାହିଁ । ପାଖରେ ଶୋଇଥିବା କୁଷ୍ଠରୋଗିଣୀଟା ହୁଏତ ପଚାରେ, "ଆଉ କେତେଦିନ ତୁ ହାଡ଼ ବାନ୍ଧିବୁ ମଉସା ?" ପହଲି ହାତ ଆଙ୍ଗୁଠି ଗଣି ଠାରି ଦିଏ 'ଆଉ ସାତଦିନ ।'

ସାତଦିନ ପରେ ପହଲି ଗାଁଆକୁ ଫେରି ଆଇଲା । ସେ ଗେଲବୋଉର ରସଖଡୁ, ବାସନକୁସନ ବିକି ଟଙ୍କା ପାଞ୍ଚଟା ଅଣ୍ଟାରେ ଖୋସି ପୁରୁଷୋତ୍ତମ ଯାଇଥିଲା । ଘରଯାକର ସବୁ ଦରବ ବିକି ସେ ପୁରୁଷୋତ୍ତମରେ ପାତକ ଛଡ଼ାଇ ଆଇଛି ।

ମାସେ ଏକାଇଶ ଦିନ ପୂରିଲା ଦିନ ସେ ପଞ୍ଚଗବ୍ୟ ହୋଇ, ବ୍ରାହ୍ମଣଭୋଜନ କରାଇ, ମୁକ୍ତିମଣ୍ଡପର ଗୋସାଇଁ ମହାପୁରୁଷ-ମାନଙ୍କୁ କିଛି କିଛି ଅଣ୍ଟାଖୋସା ଦେଇ ସେମାନଙ୍କ ପାଦଧୂଳି ଆଉ ଆଶୀର୍ବାଦ ନେଇ ଘରକୁ ଫେରି ଆଇଲା । ଆଇଲାବେଳେ ଗେଲ-ବୋଉ ପାଇଁ ମହାର୍ଦ କୋଉଁଆଏ, ଆଉ ଶୁଖିଲା ମାହାର୍ଦ କେତେ ମୂର୍ତ୍ତି ଓ ନିର୍ମାଲ୍ୟ ମଧ୍ୟ ଆଣିବାକୁ ଭୁଲି ନ ଥିଲା । ଘର ଫେରାଣି

ପଦ୍ମଲର ପାଦ ତଳେ ଲାଗୁ ନ ଥିଲା । ତା' ମନଟା ଖାଲି ଖୁସିବାସିରେ ଉଚ୍ଛୁଳି ଉଠୁଥିଲା ।

ମାଣ୍ଡଫଳର କଅଁଳ ଅନ୍ଧାର ଗାଆଁ ଉପରେ ତା'ର ପାତଳ ଖଣ୍ଡିଆ ଘୋଡ଼ାଇ ଦେଇଥାଏ । ଗାଁ'ମୁଣ୍ଡ ମାହାଲଗଛ ଉପରେ ମହୁମାଛିମାନଙ୍କର ଫଳ ସଭା ବସିଥାଏ । ଗେଲବୋଉ ତା'ର ଶୁଖିଲା ମୁହଁ ଉପରେ ନୂଆ ପଣତ ଟାଣି ଦେଇ ବୃନ୍ଦାବତୀଙ୍କ ପାଖରେ ସଞ୍ଜବତୀଟି ରଖି ଦଣ୍ଡବତ ହବାବେଳକୁ ପଛରୁ ପଦ୍ମଲ ଡାକିଲା "ଘର ଦ୍ୱାର ସବୁ ଭଲ ଅଛି ତ ଗେଲବୋଉ ?"

ଗେଲବୋଉ ଯାହା ଜବାବଦେଲା, ସେଥିରେ ପଦ୍ମଲର ହାଲୁକ ଶୁଖିଗଲା । ତା'ର ଘର ଫେରନ୍ତା ଖୁସିବାସି ଆଖି ପିଛୁଳାକେ କୁଆଡ଼େ ଉଭେଇଗଲା । 'ଘରେ ପନ୍ଦର ଦିନ ହବ ଗୁଡ଼ର ନାହିଁ, ମାଣ୍ଡିଆତକ ଝେଣ୍ଟର ଖାଇଗଲେ, ତିନିଦିନ ତଳେ ଯେଉଁ ଶୀତଦିନଆ ଅକାଳ ଝଡ଼ ହୋଇଥେଲା, ସେଥିରେ ହାଣ୍ଡିଶାଳ ଘର କାନ୍ଥଟା ଭୁଷୁଡ଼ି ପଡ଼ିଛି । ଆଉ ଭାଗ ବଳରୁ ଯେଉଁ ଧାନତକ ଅମଳ ହୋଇଥେଲା, ତାକୁ ଜମିଦାର ସାଆନ୍ତେ ସେ ପୁରୁଷୋତ୍ତମ ଯାଉଥିବା ବେଳେ ଆଗତ ସାଲର ବାକି ଖଜଣା ବାବଦକୁ ଜବତ କରି ନେଇଚନ୍ତି । ଗତ ସାଲର ଖଜଣା ମାସକ ଭିତରେ ନ ଦେଲେ ପୁଣି ଘର ଦୁଆର କୋରଖ କରିବେ ବୋଲି ଧମକ ଦେଇଚନ୍ତି ।'

ମୁଣ୍ଡରେ ହାତ ଦେଇ ପଦ୍ମଲ ସବୁ ଶୁଣିଲା । କିଛି କହିଲା ନାହିଁ । ସେରାତିଟା ପୁରୀରୁ ଆଣିଥିବା ମହାର୍ଦ୍ଦ ଖାଇ ଦୁଇ ପ୍ରାଣୀଙ୍କର ଏକ ରକାମ କଟିଗଲା ।

ସକାଳୁ ପଦ୍ମଲ ଦେଖିଲା ଚୂଲିକୁ ହାଣ୍ଡି ଯିବାକୁ ଗୁଡ଼ର ନାହିଁ । ପନିପରିବା ତ ଦୂରର କଥା । ହାଣ୍ଡିଶାଳ ଘରେ କାନ୍ଥ ଭୁଷୁଡ଼ି ପଡ଼ି

ମାଟି ଗଦା ହୋଇଚି । ଗୋଟାଏ କଣରେ ଗୋଟାଏ ମସ୍ତବଡ଼ ଉଇ-ହୁଙ୍କା ମୁଣ୍ଡ ଟେକି ଛିଡ଼ା ହେଲାଣି । ହାଣ୍ଡିକୁଣ୍ଡେଇ ହୋଇ ଯାହା ଦି'ଖଣ୍ଡ ଥିଲା, ତାହା କାନ୍ଥରୁ ମାଟି ଖସି ଚୂନ୍‌ଚୂନ୍ ହୋଇ ଯାଇଚି । ଘର ଭିତର ଖପର ଖଣ୍ଡି ଖଣ୍ଡ ହଉଚି । ପଦ୍ମଲ ଦି' ମାସ କାଳ ପଡ଼ିଆ ହୋଇ ପୁରୁଷୋତ୍ତମରେ ବସିଥିଲା—ଘରେ ଫଟା ପାହୁଲାଟାଏ ବି ନାହିଁ । ବନ୍ଧାଛନ୍ଦା ବା ବିକାକଣା କରିବାପାଇଁ ଯାହା ଭଙ୍ଗାଦଦରା ହୋଇ ଦି'ଖଣ୍ଡ ଜିନିସପତ୍ର ଥିଲା, ସେ ସବୁ ତ ପଦ୍ମଲ ବିକି ଭାଙ୍ଗି ପୁରୀରୁ ଗୋହତ୍ୟା-ପାତକ ଛଡ଼ାଇ ଆଇଚି ? ବାକି ଅଚ୍ଛି କ'ଣ ଯେ, ସେଥିକି ଆଜି ସେ ହାତ ବଢ଼ାଇବ ? ମାଇପ ହାତରେ ଖାଲି ଶଙ୍ଖା ପଟିଏ—ଦିନକୁଦିନ ବେଶି ବେଶି ହୁଗୁରି ହୋଇଯାଇଚି ।

ସଖାଳୁ ପଦ୍ମଲକୁ ଦେଖି ଗାଆଁ ବ୍ରାହ୍ମଣେ ଧାଇଁଲେ, ଭୋଜନ ଦବାକୁ ହବ । ଗାଁ ବ୍ରାହ୍ମଣ ଶୁଦ୍ଧ ନ କଲେ, କୁଆଡ଼େ ପାତକ ଛୁଡ଼ିବ ନାହିଁ । ଜମିଦାରଙ୍କ ପିଆଦା ଆସି ଦୁଆରେ ବସିଲା । ଗତ ସାଲର ଖଜଣା ପରିଶୋଧ ନ କଲେ ସାଆନ୍ତେ ମକଦ୍ଦମା କରିବେ । ଜାତିଭାଇ ଧରି ବସିଲେ, ଜାତିଭାତ ଦେଇ ଶୁଧିଆ ହେବାକୁ ପଡ଼ିବ ।

ପଦ୍ମଲ ମୂଲ ଲାଗିବାକୁ ବାହାରିଲା । ମାଘ ପୁଷ୍ୟମାସ, ଧାନକଟା ପରେ ପାଇଟି କାହୁଁ ଯୁଟିବ ? ତା ଛଡ଼ା ପଦ୍ମଲ ଲକ୍ଷ୍ୟ କଲା ଯେ, ଗାଁଲୋକେ ତାକୁ ଦେଖି ଆଜିକାଲି କମିତି ନାକ ଟାଉଁ ଟାଉଁ କରୁଚନ୍ତି । ଜଣେ ସେ ଦିନ ତାକୁ ବଡ଼ପାଟି କରି ଶୁଣାଇ ଦେଲା— "ଗୋରୁମରାଟାକୁ ଛୁଇଁଲେ ଛୁଆଁ ନାଗିବ ।" ପଦ୍ମଲ ସେଦିନୁ ଆଡ଼ଛଡ଼ା ହୋଇ ରହୁଚି, କାହାରି ସାଥିରେ ବଳେ ପଶି ମିଳାମିଶା କରୁନାହିଁ ।

ଜାତିଆଣ ଭାତ ଦେଇ ନ ପାରିବାରୁ ପଦ୍ମଲ ଅଜାତିଆ ହେଲା । ସବୁଆଡ଼େ ବାସନ୍ଦ । ବ୍ରାହ୍ମଣ ଗୋସେଇଁମାନେ ଅଡ଼ି ବସିଲେ ।

ଧୋବା ଭଣ୍ଡାଘ୍ର, ନିଆଁ ପାଣି ସବୁ ମନା ହୋଇଗଲା । ପଦ୍ମଲି ଏକ-ଘରକିଆ ହୋଇ ରହିଲା ।

ପଦ୍ମଲର ଶାଳଗଜା ପର ଦେହଟା ଗୁହ୍ମୁଁ ଗୁହ୍ମୁଁ ଆସି କଣ୍ଠା ହୋଇ ଗଲାଣି । ଗେଲବୋଉକୁ ଫୁଙ୍କି ଦେଲେ ପଡ଼ିଯିବ । ଖାଲି ହାଡ଼ ଦି'ଖଣ୍ଡ ଦେଖା ଯାଉଚି । ସେ ସ୍ତ୍ରୀକୁ ବାପଘରକୁ ପଠାଇ ଦେଲା ।

ପଦ୍ମଲର ଦିନେ ଚୂଲି ଜଳିଲେ ଦି'ଦିନ ଖାଡ଼ା ଉପାସ । ଦୋକାନୀ ଧୋବି ସାହୁ କାଡ଼ିଆ ଦବାକୁ ନାହିଁ କରି ଦେଲାଣି । ପଦ୍ମଲକୁ ବୁଦ୍ଧି ଦିଶୁନାହିଁ ।

ଦୁଃଖ ଅଭାବ ହାନି ଗ୍ଳାନି ସହି ସହି ପଦ୍ମଲର ମୁଣ୍ଡ ଖରାପ ହୋଇ ଗଲାଣି । ସେ ପୁରୁଷୋତ୍ତମ କ୍ଷେତ୍ରରେ ଏତେ ଟଙ୍କା ପଇସା ଖର୍ଚ୍ଚ କରି ମନର ଯେଉଁ କଳାଦାଗଟାକୁ ନିଭାଇ ଦେଇ ଆସିଥିଲା, ତାହା ପୁଣି ଟହଟହ ଡ଼ିଆ ହୋଇ ତା ମନ ଉପରେ ଗାର କାଟିଲାଣି ।

ଆଗପରି ପୁଣି ସେଇ ଭୟଙ୍କର ସ୍ୱପ୍ନ ତାକୁ ବେଳେ ବେଳେ ପାଗଳ କରି ପକାଉଚି । ସେ ବେଳେ ବେଳେ ଚମକି ଉଠୁଚି । ତା'ର ମନେ ହେଉଚି, ଗୋଟାଏ କ'ଣ କାଳିଆ ହୋଇ ଯିମିତି ସଁସଁ ହୋଇ ତା ଚାରିପଟେ ଚରି ବୁଲୁଚି । ସେ ରାତିରେ ସ୍ୱପ୍ନ ଦେଖୁଚି, ଗୋଟିଏ ମାରଣା ବଳଦ ତାକୁ ଯେପରି ଶିଙ୍ଗରେ ଭୂଷି ଦେବା ଲାଗି ଲାଞ୍ଜ ଠିଆ କରି ଧାଇଁ ଆସିଚି । ସେ ସପନରେ ବିଳିବିଳେଇ ଉଠୁଚି—"ହେଇ, ଆଇଲା, ଭୂଷିଦବ, ଭୂଷିଦବ, ପଳାଅ, ପଳାଅ......।"

ପଦ୍ମଲର ସବୁ ଯାଇ ବାକି ଯାହା ଥିଲା, ସେଇ ଭଙ୍ଗା ଘର-ଖଣ୍ଡିକ ମଧ୍ୟ ଶେଷରେ ଖଜଣା ଦେଇ ନ ପାରିବାରୁ ନିଲାମ ହୋଇ-ଗଲା । ତା'ର ଏଡ଼େ ବଡ଼ ଦୁନିଆରେ ମୁଣ୍ଡ ଗୁଞ୍ଜିବାକୁ ବାଡ଼

ଗୋବରରେ ଗୋବେ ହେଲେ ଥାନ ରହିଲା ନାହିଁ । ଘରଖଣ୍ଡିକ ନିଲାମ ହେଲାବେଳେ ପଦ୍ମଲି ବକ୍ ବକ୍ ହୋଇ ଅନାଇଁ ରହିଥିଲା । ତା'ପାଟିରେ ଉଁ କି ଚୁଁ କଥା ଫିଟୁ ନ ଥିଲା । ତାକୁ ଯେତେବେଳେ ଜଣାଇ ଦିଆଗଲା ଯେ, ଏଣିକି ଆଉ ସେ ଘରେ ରହିପାରିବ ନାହିଁ, ସେତେବେଳେ ସେ ଚୁପ୍ କରି ଉଠି ଛିଡ଼ାହେଲା । ତା'ପରେ ଗୋଟାଏ ସାବଲ ନେଇ ହାଣ୍ଡିଶାଳ ଘରୁ ତା'ର ଈଶାଣ ବେଦୀ ଆଉ ବାଡ଼ିପଟ କାନ୍ଥରୁ ତା'ର ମଲାଝିଅ ଗେଲିର ଷଠୀଗାତଟାକୁ ତାଡ଼ି ନେଇ ଆସି ଧୀରେ ଧୀରେ ସେ ଘର ଗୁଡ଼ି ପଦାକୁ ବାହାରିଲା । ସେଇ ଯେ ଗଲା, ଆଉ ଥରେ ହେଲେ ସେ ଫେରି ଆଇଲା ନାହିଁ ।

ବାପ ଅଜା ଅମଳର ଘରଖଣ୍ଡିକ ଯିବା ପରେ ପଦ୍ମଲିର ମନର ଅବସ୍ଥା ଆଉରି ଖରାପ ହୋଇଗଲା । ସେ ଏ ଓଳି ସେ ଓଳି ହୋଇ କୌଣସି ପ୍ରକାରେ ରାତି କଟାଇ ଦେବାକୁ ଲାଗିଲା ।

ଘର ମଝିରେ ଥିବା ଝଙ୍କା ସଜନା ଗଛଟି ପଦ୍ମଲିର ଭାରି ପ୍ରିୟ । କୁଡ଼ କୁଡ଼ କରି ଅଇଁଠା ପାଉଁଶ ତା ମୂଳରେ ଓଜାଡ଼ୁଚି ସେ । ସଜନା ଗଛରେ ଛୁଇଁ କେରା କେରା ଫଳ ତଳେ ଝୁଲୁଚି ପଛକେ ସେଥିରୁ ଗୋଟେ ତୋଳି ଆଣି ପଖାଳ ଖାଇବା ପାଇଁ ତା' ହାତ ଯାଇ ନାହିଁ ସ'ଜରେ । ତା'ରି ଛାଇରେ ବସି କେତେ ଜହ୍ନରାତି ସେ କଟାଇ ଦେଇଚି । ଦାଣ୍ଡରେ ଠିଆ ହୋଇ ଦିନେ ଦିନେ ପଦ୍ମଲି ସେଇ ଗଛଟା ଆଡ଼କୁ ଚାହେଁ—ତା ମୂଳରେ ଟିକିଏ ଯାଇ ବସିବା ପାଇଁ ତା'ର ଭାରି ଇଚ୍ଛା ହୁଏ; କିନ୍ତୁ ସେ ଫେରି ଆସେ । ସାଆନ୍ତ ଘରର ଜଗୁଆଳଟା ତାକୁ ଦେଖି ଥଟ୍ଟା କରି କହେ, "କିବେ, ଗୋରୁମରା ପଦ୍ମଲି !"

ପଦ୍ମଲିର ମନେ ପଡ଼େ ତା ଘରର ପଛପଟ ପିଣ୍ଡାତଳେ ବୁଢ଼ା ବୁଢ଼ା ହୋଇ କାନସିରି ଶାଗ ମାଡ଼ିଥିବ । କୂଅମୂଳେ ସେଇ

ସଦାବହାଗ୍ର ଆଉ ଗୋଡ଼ିବାଣ ଗଛଗୁଡ଼ାକ ବୋଧହୁଏ ଫୁଲରେ ନେଥି ହୋଇଯାଉଥିବେ । ତା'ର ମନ ଡ଼ାକେ କମିତି ଠିକଏ ଯାଇ ସେ ଏସବୁ ଗୁଡ଼ାକ ଥରେ ଆଖି ପୂରାଇ ଦେଖି ଆସନ୍ତା କି !

ତା' ଭଙ୍ଗା ଗ୍ଣଡ ଭିତରେ କୋହ ଉଠେ । ତା' ମନଟା ଚୂନା ଚୂନା ହୋଇ ଭାଙ୍ଗ ପଡ଼େ । ସେ ଚେଇଁ ଚେଇଁ କେତେ କ'ଣ ବିକଟାଳ ସ୍ୱପ୍ନ ଦେଖେ । ବାଉଳା ହୁଏ । ତା'ର ମନେ ହୁଏ, ସେ ଯେମିତି ଇଆ ଭିତରେ କଉଦିନ ମରିଗଲାଣି ।

× × ×

ଘର ନିଲାମ ହବାର ମାସ ଗୋଟାକ ପରେ ସାହିବାଲା ଜନେ କଥାବାର୍ତ୍ତା ହେଲେ, ପହଲ ପଧାନ ପାଗଳ ହୋଇଗଲାଣି । ଗୁହ ମୂତ ସାଲୁ ବାଲୁ ହୋଇ ଏଣେ ତେଣେ ବୁଲୁଚି, ଆଉ ମଣିଷ ଦେଖିଲେ କହୁଚି—ହେଇ, ଆଇଲା, ଆଇଲା, ଭୁଷିଦବ, ଭୁଷିଦବ ହୁସିଆର ।

ପାହାଡ଼କୁ ଜାଳେଣିକାଠ ଗୋଟାଇବା ନାଗି କେତେଜଣ ବାଉରାଣୀ ଟୋକା ଯାଇଥିଲେ । ସେମାନେ ସଞ୍ଜବୁଡ଼େ ଧୋବସାହୁ ଦୋକାନ ମୁଣ୍ଡରେ କଥାଭାଷା ହଉଥିଲେ—ପହଲା ପାହାଡ଼ ଉପରେ ବଇଚି—ଖାଲି ବଳଦଙ୍କ ପରି ବୋବାଳି ଗ୍ଣଡ଼ୁଚି—ଆଉ କହୁଚି—"ହେଇ ଆଇଲା, ଆଇଲା; କେଡ଼େ କେଡ଼େ ଶିଙ୍ଗ ହୋଇଚି, ଖାଲି ସଁ ସଁ ହଉଚି । ମୁଁ ମରିଗଲି, ମୁଁ ମରିଗଲି ସାଆନ୍ତେ ।"

ସବୁ ଶୁଣି ଗମ୍ଭୀର ହୋଇ ନଧିମିଶ୍ରେ କହିଲେ—ତା' ପାପ ତାକୁ ଦେଖେଇବ ନାଇଁ ତ ଯିବ କୁଆଡ଼େ ? ଶୁଦ୍ଧ ନ ହେଲେ କି ଗୋହତ୍ୟା ପାପ ଗ୍ଣଡ଼େ । ଆମେ ଯେତେ କହିଲୁଁ, ଆମକଥା ଶହେଇଲା । ଟଙ୍କା ଦଶୁଟା ଖର୍ଚ୍ଚ କରି ବ୍ରାହ୍ମଣଭୋଜନଟା କରାଇ

ଶୁଧିଅ ହେଇ ଯାଇଥିଲେ ଆଜ ସେ ସୁରୁଖୁରୁରେ ଝାଡ଼ଝୁଡ଼ ହୋଇ ବସିଥାନ୍ତା । ଧର୍ମ କ'ଣ କୁଆଡ଼େ ଯାଇଚ ?

ପଣ୍ଡିତ ବ୍ରହ୍ମା କହିଲେ—ଆଜିକାଲି ଶାସ୍ତ୍ର ପୁରାଣ କଥା କିଏ କଣ ମାନୁଛନ୍ତି, ମିସ୍ତ୍ରେ ? ଦେଖୁନ ମଲାବେଳେ କେମିତି ଗୋରୁପରି ବୋବାଉଚି ? ତାକୁ ଆସି କାଳ ପୁରିଲାଣି । ତା' ପାପ ତା ଆଗେ ଆଗେ ଯାଉଚି ନା ଲୁଚୁଚି ?

ନାଗୁଟିଆ ପାହାଡ଼ ଉପରେ ପହଲର କଙ୍କାଳ । ଗୋଟାଏ ଭୟାନକ କଳ୍ପନାର ପ୍ରେତାତ୍ମା ତା' ମନ ଉପରେ ନମ୍ବ ନମ୍ବ ଗୁଇ ପକେଇ ମାଡ଼ିବଇଚି । ସେଥିରୁ ତା'ର ଉଦ୍ଧାର କାହିଁ ? ତା ସଙ୍ଗରେ ଏକଯୁଟ ହେଇଚନ୍ତି ବହୁଦିନର ଭୋକ, ଓପାସ, ଅଭାବ ଯନ୍ତ୍ରଣା ଆଉ ଅପମାନ । ସମସ୍ତେ ମିଳି ତା' ମନଟାକୁ ଚୂନା ଚୂନା କରି ପେଷି ଦବାକୁ ବଇଚନ୍ତି ।

ପହଲ ଦେଖୁଚି ତା ଆଗରେ ଘରଦ୍ୱାର, ସ୍ତ୍ରୀ-ପରିବାରର, ଜ୍ଞାତି-କୁଟୁମ୍ବ କେହି ନାହାନ୍ତି । ଅଛି ଖାଲି ଗୋଟାଏ ଫାଙ୍କା ନିଶନ···ମ ଆଉ ଅଛି ଗୋଟାଏ ମସ୍ତବଡ଼ ପୋଥି—ପୃଷ୍ଠାରେ ତା'ର ନେଖା ହେଇଚି ବଡ଼ ବଡ଼ ଯମଦୂତଙ୍କ ଛବି, କଳା କଳା ଆଖି, ଗୋଜା ଗୋଜା ଶିଙ୍ଗ । ସେ ପୋଥିର ଅକ୍ଷରଗୁଡ଼ାକ ଗୋଟେ ଗୋଟେ ଯେମିତି ଘୋରଣା ଚକ··· ।

ପହଲର ମନେ ହୁଏ, ସେ ଗୋରୁ ମାରି ନାହିଁ ଯେ ତା' ନିଜ ବେକରେ କ୍ଷୁଶି ବସେଇଚି ।

ପହଲର ଅଚଳ ତାବଦା ମନଟା ଆଉ ହଲଚଲ ହୋଇ ପାରୁ ନାହିଁ । ସବୁ ତାକୁ ମାଡ଼ି ମାଡ଼ି ପଡ଼ୁଚି, ଗୁହିଆଡ଼ ଖାଲି ତାକୁ ଖାଁ ଖାଁ ଜଣାଯାଉଚି ।

ବେତନଟୀର ଘଞ୍ଚ ଅରମା ଭିତରୁ ଡାମରାକାଉ ଡାକଯାଏ 'କା-କା-କା' । ବଣ, ନଟା, ମୁଣ୍ଡିଆ ସମସ୍ତେ ଯିମିତି ଜାଅନ୍ତା ମଣିଷ ପରି ଭୁହାଇ ଭୁହାଇ ତା କାନଭିତରେ ଡାକଯାଆନ୍ତି ଆ—ଆ—ଆ ।

ପହଲ ଦେଖିଲା ତଳ ଗାଁ ଗ୍ରାମାଗୁଡ଼ିକର ମଡ଼ାଟା । ତା' ମଲା ମୁହଁରେ ଠହ ଠହ ଉଛୁଳା ହସ ।

ଆଉ ଦୂରରେ ଗୋଟାଏ କଣ ସଅଁ ସଅଁ ହୋଇ ଚରୁଚ !!!

ପହଲ ଭପୂରେ ଚରିଚରେଇ ଉଠି ବେହୋସ ହୋଇ ତଳେ ଗୋଟାଏ ମୁନିଆଁ ପଥର ଉପରେ କଟ୍ଟିଡ଼ ହୋଇ ପଡ଼ିଲା ।

ତହୁଁଆରଦିନ ପତର ଗୋଟେଇ ଟୋକାଏ ଯାଇ ଗାଆଁରେ ରାଷ୍ଟ୍ର କଲେ—ପହଲ ସୁକୁ ସୁକୁ ହୋଇ ଡୁକଉଚ । ଏଇନା କି ଆଉ ଟିକେ...।

ଛେଳ ଜଗୁଆଳୀ ନୋକା ଯାଇ ସାହି ମଝିରେ ହାତ ଗୋଡ଼ ହଲାଇ କହିଲା—ଢ଼'ଟା ଯମଦୂତ ପହଲକୁ ଜଗି ବଇଚନ୍ତି । ମୁହଁଗୁଡ଼ାକ ତାଙ୍କର ବଳଦ ପରି । ସେ ଧୋ ଧୋ କରି ଦବାରୁ ସେମାନେ ପଳାଇ ଗଲେ ।

ଗାଆଁର ଢ଼'ଗୁରି ଜଣ ଭେଣ୍ଡିଆ ଯାଇ ଦେଖି ଅଇଲେ ଗୋଟେ ପଥର ସନ୍ଧିରେ ମୁଣ୍ଡ ଗେଞ୍ଜି ପହଲ ପଡ଼ିଚ । ତା ଖପୁରିରୁ ଫାଳେ ଉଡ଼ିଯାଇ ଦହି ବାହାରି ପଡ଼ିଚ୍ଛି ।

ଖବର ପାଇ ସେଇ ରାତିରେ ଗେଲବୋଉ ଅଇଲା । ସେ ଗିରସ୍ତକୁ ଶୁଧି କରି ଗୋରୁମରା ପାତକରୁ ଉଦ୍ଧାର କରିବା ନାଗି ବାପଘରୁ କିଛି ଟଙ୍କା ଧରି ଆଇଥେଲା । ସେହି ରାତିରେ ତାକୁ ଟିକଏ ପହଲ ପାଖକୁ ନେଇଯିବା ପାଇଁ ସେ କେତେ ନୋକଙ୍କ ପାଖରେ ନେହିନେହୁରି ହେଲା; ମାତ୍ର ଏଡ଼େ ବଡ଼ ଗାଆଁଟାରେ ଜଣେହେଲେ କେହି ରାତି ଅଧରେ ମୁଣ୍ଡିଆ ଉପରକୁ ଯିବାକୁ ମଙ୍ଗିଲେ ନାଇଁ ।

ବଡ଼ ସକାଳୁ ଗେଲବୋଉ ମୁଣ୍ଡିଆ ଉପରକୁ ଯାଇ ବାଉରୀଣୀ ଟୋକୀଙ୍କଠାରୁ ସନ୍ଧାନ ନେଇ ଦେଖିଲା, ପଦ୍ମଳ ମରିଗଲାଣି । ତା ପାଟିରୁ ଫେଣ ବାହାରି ପଡ଼ିଛି, ଆଖି ଖୋସି ହୋଇ ଯାଇଛି, କାନପାଖ ଖପୁରୀରୁ ଫାଳେ କେନା କେନା ହୋଇ କୁଆଡ଼େ ଉଡ଼ି ଯାଇଛି ।

ତା ଆଖିରୁ ଲୁହ ମରି ଯାଇଥିଲା । ସେ କେବଳ କଲବଲ ହୋଇ ସେ ଆଡ଼କୁ ଅନାଇ ରହିଲା !

ଅଣଶୁଧିଆ ପଦ୍ମଳର ମୁର୍ଦ୍ଦାର କମିତି ଉଠିବ, ଏ କଥା ନେଇ ଗାଆଁରେ ଭାରି ଯୁକ୍ତିତର୍କ ଚାଲିଥିଲା ।

ଗେଲବୋଉ ଗିରସ୍ତକୁ ଶୁଧ କରିବାପାଇଁ ବାପଘରୁ ଆଣିଥିବା ଦଶଟି ଟଙ୍କା ପଣତ କାନିରୁ ଫିଟେଇ ଗାଆଁର ମୁରବି-ମାନଙ୍କ ହାତକୁ ବଢ଼ାଇ ଦେଇ ନମ୍ର ହୋଇ ସମସ୍ତଙ୍କ ଗୋଡ଼ ତଳେ ପଡ଼ିଗଲା ।

ବ୍ରାହ୍ମଣ ଗୋସେଇଁ ଆଉ ଜାତିଭାଇମାନେ ଖୁସି ହୋଇ ପଦ୍ମଳର ମୁର୍ଦ୍ଦାରକୁ ଆଶୀର୍ବାଦ କଲେ ।



# ପଣ

## ଲେଖକ—ଆନନ୍ତ ପାଭ୍ଲୋଭିଚ୍ ଚେକଭ୍
## ଅନୁବାଦକ—ଶ୍ରୀ ପ୍ରଭାସ ଚନ୍ଦ୍ର ଶତପଥୀ

ଅନ୍ଧକାର ରାତି । ନିଜର ପାଠାଗାରରେ ଏକୋଣରୁ ସେକୋଣ ପଦଚାରଣ କରୁ କରୁ ବୃଦ୍ଧ ଶ୍ରେଷ୍ଠୀ ଅତୀତର ଗୋଟିଏ ଘଟଣା ସ୍ମରଣ କରୁଥିଲେ । ଠିକ୍ ପନ୍ଦର ବର୍ଷ ପୂର୍ବେ ଏହିପରି ଏକ ରାତିରେ ସେ ଗୋଟିଏ ଭୋଜର ଆୟୋଜନ କରିଥିଲେ । ବହୁତ ବିଦ୍ୱାନ୍ ଓ ଗଣ୍ୟମାନ ଲୋକ ନିମନ୍ତ୍ରିତ ହୋଇ ସେ ଭୋଜରେ ଯୋଗ ଦେଇଥିଲେ । ସୁତରାଂ, ନାନା ଚମତ୍କାର ବିଷୟରେ ଆଳାପ ଆଲୋଚନା ଜମି ଉଠିଥିଲା; କିନ୍ତୁ ଶେଷରେ କେବଳ ପ୍ରାଣଦଣ୍ଡ ବିଷୟରେ ସମସ୍ତଙ୍କୁ ଯୁକ୍ତିତର୍କ କରୁଥିବାର ଦେଖାଗଲା । ଅତିଥି-ମାନଙ୍କ ଭିତରୁ କେତେଜଣ, ବିଶେଷତଃ ସାମ୍ବାଦିକ ଓ ପଣ୍ଡିତ-ଲୋକମାନେ, ପ୍ରାଣଦଣ୍ଡ ପ୍ରଥାକୁ ଅତ୍ୟନ୍ତ ନିଷ୍ଠୁର, ନୀତିବିରୁଦ୍ଧ ଏବଂ ଏକ ବର୍ବର ପ୍ରଥା ବୋଲି ମତ ପ୍ରକାଶ କଲେ । ଆଉ କେତେଜଣ ପ୍ରାଣଦଣ୍ଡ ପରିବର୍ତ୍ତିରେ କେବଳ ଯାବଜ୍ଜୀବନ କାରାବାସ ପ୍ରଥା ପ୍ରଚଳନ କରାଯିବା ଉଚିତ ବୋଲି କହିଲେ ।

ଏହା ଶୁଣି ଶ୍ରେଷ୍ଠୀ କହିଲେ, "ମୁଁ କିନ୍ତୁ ଆପଣମାନଙ୍କ ସହ ଏକମତ ହୋଇ ପାରୁନାହିଁ । ଏହା ଭିତରୁ କୌଣସି ବିଷୟରେ

ଅବଶ୍ୟ ମୋର ପ୍ରତ୍ୟକ୍ଷ ଅଭିଜ୍ଞତା ନାହିଁ; କିନ୍ତୁ ଅପରାଧୀର ତରଫରୁ ଯଦି ବିଚାର କରାଯାଏ, ଯାବଜ୍ଜୀବନ କାରାବାସ ଅପେକ୍ଷା ପ୍ରାଣଦଣ୍ଡ ବରଂ ଅଧିକ ନୀତି ଅନୁମୋଦିତ ଏବଂ ଅଧିକ ମାନବୀୟ ବୋଲି ମୁଁ ଭାବୁଛି । ପ୍ରାଣଦଣ୍ଡ ମୁହୂର୍ତ୍ତକ ମଧ୍ୟରେ ସବୁ ଶେଷ କରିଦିଏ; କିନ୍ତୁ ଯାବଜ୍ଜୀବନ କାରାବାସ ତିଳ ତିଳ କରି ଜୀବନକୁ ହତ୍ୟାକରେ । ସୁତରାଂ, ସଙ୍ଗେ ସଙ୍ଗେ ମାରିବା ଅପେକ୍ଷା ବର୍ଷ ବର୍ଷ ଧରି କ୍ରମାନ୍ୱୟରେ ମାରିବାକୁ ମାନବିକତା ଦୃଷ୍ଟିରୁ କେହି କଦାପି ସମର୍ଥନ କରି ପାରିବ ନାହିଁ ।"

ଅତିଥିମାନଙ୍କ ମଧ୍ୟରୁ ଜଣେ କହିଲେ, "ମୋ ମତରେ ଦୁଇଟି-ଯାକ ସମାନ ନୀତିବିରୁଦ୍ଧ; କାରଣ ଉଭୟର ଉଦ୍ଦେଶ୍ୟ ହେଉଛି ଏକ—ମଣିଷର ଜୀବନ ନେବା; କିନ୍ତୁ ସରକାର ତ ଆଉ ସ୍ୱୟଂ ଭଗବାନ ନୁହେଁ । ଜୀବନ ନେଲେ ଫେରାଇ ଦେଇ ପାରିବାର କ୍ଷମତା ଯେତେବେଳେ ତାର ନାହିଁ; ସୁତରାଂ ଜୀବନ ନେବାର ଅଧିକାର ମଧ୍ୟ ତାର ନାହିଁ ।"

ଦଳ ଭିତରେ ଜଣେ ତରୁଣ ଓକିଲ ଥିଲେ । ବୟସ ପ୍ରାୟ ପଚିଶ ଭିତରେ ହେବ । ତାଙ୍କ ମତ ପଚରା ଯିବାରୁ ସେ କହିଲେ, "ମୃତ୍ୟୁଦଣ୍ଡ ଓ ଆଜୀବନ କାରାବାସ ସମାନ ନୀତିବିରୁଦ୍ଧ; କିନ୍ତୁ ଦୁଇଟି ଭିତରୁ ଗୋଟିଏକୁ ବାଛିବାର ପ୍ରଶ୍ନ ଉଠିଲେ ଆଜୀବନ କାରାବାସକୁ ମୁଁ ନିଶ୍ଚୟ ବରଣ କରିନେବି । ମୂଳରୁ ନ ବଞ୍ଚିବା ଅପେକ୍ଷା ଯେ କୌଣସିମତେ ବଞ୍ଚିରହିବା ଶତ ଗୁଣରେ କାମ୍ୟ ।"

ଆଲୋଚନା ଏହାପରେ ସରଗରମ ହୋଇ ଉଠିଲା । ଶ୍ରେଷ୍ଠୀଙ୍କର ବୟସ ସେତେବେଳେ ଅପେକ୍ଷାକୃତ ଅଳ୍ପ ଥିଲା । ସେ ମଧ୍ୟ ଅସ୍ଥିର ପ୍ରକୃତିର ଥିଲେ । ସଙ୍ଗେ ସଙ୍ଗେ ସେ ଧୈର୍ଯ୍ୟ ହରାଇ ଟେବୁଲ ଉପରେ ଗୁମ୍ପୁଡ଼ା ମାରି ତରୁଣ ଓକିଲଙ୍କ ଆଡ଼କୁ ବୁଲିପଡ଼ି

କହିଲେ, "ମିଛ କଥା । ଆପଣ ଯଦି ମାତ୍ର ପାଞ୍ଚଟି ବର୍ଷ ଗୋଟିଏ କୋଠରୀ ଭିତରେ ଆବଦ୍ଧ ହୋଇ ରହିପାରିବେ, ମୁଁ ଆପଣଙ୍କୁ କୋଡ଼ିଏ ଲକ୍ଷ ଟଙ୍କା ଦେବି, ବାଜି ରଖିଲି ।"

"ଆପଣ ଯଦି ପ୍ରକୃତରେ କୋଡ଼ିଏ ଲକ୍ଷ ଟଙ୍କା ବାଜି ରଖୁଛ-ଆନ୍ତି," ଓକିଲ କହିଲେ, "ତେବେ ପାଞ୍ଚବର୍ଷ କାହିଁକି, ପନ୍ଦର ବର୍ଷ ମୁଁ ରହିବା ପାଇଁ ପ୍ରସ୍ତୁତ ଅଛି; ମୁଁ ମଧ୍ୟ ବାଜି ରଖିଲି ।"

"ପନ୍ଦର ବର୍ଷ ! ବେଶ୍ !" ଶ୍ରେଷ୍ଠୀ ପାଟି କରି କହିଲେ । "ଶୁଣନ୍ତୁ ସମସ୍ତେ, ମୁଁ କୋଡ଼ିଏ ଲକ୍ଷ ପଣ କଲି !"

"ମଂଜୁର ! ଆପଣ କୋଡ଼ିଏ ଲକ୍ଷ ପଣ କଲେ, ମୁଁ ମୋର ସ୍ୱାଧୀନତା ପଣ କଲି," ଜବାବ ଦେଲେ ଓକିଲ ।

ସେହି ଉଦ୍ଭଟ ଏବଂ ହାସ୍ୟାସ୍ପଦ ପଣ ଏହିପରି ଭାବରେ ଅନୁମୋଦିତ ହୋଇଗଲା । ଶ୍ରେଷ୍ଠୀଙ୍କର ସେତେବେଳେ ଅପର୍ଯ୍ୟାପ୍ତ ଟଙ୍କା ଥିଲା । ସେ ଥିଲେ ବେପରୁଆ ଓ ଉଦ୍ଭଟ ଖାମଖିଆଲି । ଏକ ବର୍ଣ୍ଣ୍ୟ ଆନନ୍ଦରେ ସେ ପାଗଳ ହୋଇଗଲେ । ସମସ୍ତେ ଭୋଜନରେ ବସିଥିଲାବେଳେ ଥଟ୍ଟାକରି ସେ ଓକିଲଙ୍କୁ କହିଲେ, "ବର୍ତ୍ତମାନ ମଧ୍ୟ ସମୟ ରହିଛି । ଆପଣ ଆଉ ଥରେ ଭଲ ଭାବରେ ବିଚାର କରି ଦେଖନ୍ତୁ । କୋଡ଼ିଏ ଲକ୍ଷ ଟଙ୍କା ମୋ ଆଗରେ କିଛି ନୁହେଁ; କିନ୍ତୁ ଜୀବନର ତିନି ଚାରିଟି ବର୍ଷ ମୁଁ କହୁଛି । କାରଣ ତାଠାରୁ ଅଧିକ ଆପଣ କଦାପି ରହିପାରିବେ ନାହିଁ । ଏକଥା ମଧ୍ୟ ଆପଣ ଭୁଲି ଯାଆନ୍ତୁ ନାହିଁ ଯେ, ସ୍ୱେଚ୍ଛାରେ ବନ୍ଦୀ ହେବା ଅପେକ୍ଷା ବଳ ପ୍ରୟୋଗ କରି ଜଣକୁ ବନ୍ଦୀ କରି ରଖିବା ଏକ କଥା ନୁହେଁ । ଆପଣଙ୍କୁ ଯଥେଷ୍ଟ ଶକ୍ତି ପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼ିବ ! ଇଚ୍ଛାକଲେ ଯେ କୌଣସି ମୁହୂର୍ତ୍ତରେ ଆପଣ ନିଜକୁ ମୁକ୍ତ କରି

ପାରବେ—ଏ ଯେଉଁ ଧାରଣା—ତାହା ବିଷାକ୍ତ କରି ଦେବ ଆପଣଙ୍କ ସମୁଦାୟ ଜୀବନକୁ ଓ ଅସ୍ତିତ୍ୱକୁ । ହତଭାଗା ! ମୋର ଦୟା ଆସୁଅଛି ଆପଣଙ୍କ ଉପରେ ।”

ବର୍ତ୍ତମାନ ଘରର ଏକୋଣରୁ ସେକୋଣ ଚାଲି ବୁଲୁ ବୁଲୁ ଶ୍ରେଷ୍ଠୀ ମନେ ପକାଉଥିଲେ ସେ ସବୁ କଥା ଓ ନିଜକୁ ପ୍ରଶ୍ନ କରୁଥିଲେ, “କାହିଁକି ମୁଁ ଏପରି ଗୋଟିଏ ପଣ କଲି ? କ’ଣ ଲାଭ ହେଲା ଏଥିରୁ ? ଓକିଲ ଜୀବନର ପନ୍ଦରଟି ବର୍ଷ ନଷ୍ଟ କଲା, ମୁଁ କୋଡ଼ିଏ ଲକ୍ଷ ଟଙ୍କା ପାଣିକୁ ଫିଙ୍ଗିଲି; ଏହା କି କ’ଣ ପ୍ରମାଣ କରିଦେବ ଯେ, ଆଜୀବନ କାରାବାସ ପ୍ରାଣଦଣ୍ଡଠାରୁ ଶ୍ରେୟସ୍କର ? ନା, ନା ! ସବୁ ତୁଚ୍ଛ ପାଗଳାମି । ମୋ ପକ୍ଷରେ ଜଣେ ଅବସ୍ଥାପନ୍ନ ଲୋକର ସେ ଥିଲା ଗୋଟିଏ ଖିଆଲ ଓ ଓକିଲର ଥିଲା ସୁନାର ମୋହ ।”

ସେ ଆହୁରି ମନେ ପକାଇଲେ ସାଂଧ୍ୟମିଳନ ପରର ଘଟଣା ସବୁ । ଠିକ୍ ହେଲା ଯେ ଶ୍ରେଷ୍ଠୀଙ୍କର ବଗିଚା ଭିତରେ ଗୋଟିଏ ଛୋଟ କୋଠରୀରେ କଠୋର ପର୍ଯ୍ୟବେକ୍ଷଣ ଭିତରେ ଓକିଲ କାରାଦଣ୍ଡ ଭୋଗିବେ । ସେହି ସମୟ ଭିତରେ ସେ କୋଠରୀର ବାରଣ୍ଡା ସୁଦ୍ଧା ସ୍ପର୍ଶ କରିପାରିବେ ନାହିଁ, ମଣିଷର କଣ୍ଠସ୍ୱର ଶୁଣି ପାରିବେ ନାହିଁ କିମ୍ବା ଆଖିରେ ଦେଖି ପାରିବେ ନାହିଁ । ଜୀବନ୍ତ ମଣିଷକୁ ଓ ଚିଠିପତ୍ର, ଖବରକାଗଜ ଆଦିର ସୁବିଧାରୁ ମଧ୍ୟ ସେ ବଞ୍ଚିତ ହେବେ । ସେ କିନ୍ତୁ ବହି ପଢ଼ି ପାରିବେ, ଚିଠି ଲେଖି ପାରିବେ, ବାଦ୍ୟଯନ୍ତ୍ର ବ୍ୟବହାର କରିପାରିବେ । ସର୍ତ୍ତ ରହିଲା ଯେ, କେବଳ ଏହି ଉଦ୍ଦେଶ୍ୟରେ ତିଆରି ହୋଇଥିବା ଗୋଟିଏ ଛୋଟ ଝରକା ଦେଇ ସେ ବାହାର ଜଗତ ସହିତ ସଂପର୍କ ରଖି ପାରିବେ—କିନ୍ତୁ ତାହା କେବଳ ନୀରବରେ । ବହିପତ୍ର,

ମଦ୍ୟ, ସଙ୍ଗୀତ—ଯାହା ସେ ଗୃହିଁବେ—ଯେତେ ପରିମାଣରେ ସେ ଗୃହିଁବେ—ସବୁ ତାଙ୍କୁ ଯୋଗାଇ ଦିଆଯିବ ସେ ଝରକା ଭିତର ଦେଇ । ଚୁକ୍ତିରୁ କୌଣସି ସାମାନ୍ୟତମ ବିଷୟ ବାଦ ଗଲାନି । ସେ ଅନୁସାରେ କାରାବାସ ସମ୍ପୂର୍ଣ୍ଣ ନିର୍ଜ୍ଜନ କରାଗଲା ଓ ଓକିଲ ବାଧ ରହିଲେ ୧୮୭୦ ମସିହା ନଭେମ୍ବର ୧୪ ତାରିଖ ରାତି ବାରଟା ଠାରୁ ୧୮୮୫ ମସିହା ନଭେମ୍ବର ୧୪ ତାରିଖ ରାତି ବାରଟା ପର୍ଯ୍ୟନ୍ତ ଠିକ୍ ପନ୍ଦରବର୍ଷ ଅବରୁଦ୍ଧ ରହିବା ପାଇଁ । କୌଣସି ସର୍ତ୍ତରେ ସାମାନ୍ୟ ବ୍ୟତିକ୍ରମ କରିବାକୁ ଚେଷ୍ଟା କଲେ, ଏପରିକି ନିର୍ଦ୍ଦିଷ୍ଟ ସମୟର ମାତ୍ର ଦୁଇମିନିଟ୍ ପୂର୍ବରୁ ସେ ଯଦି ପଳାଇ ଯିବାର ଚେଷ୍ଟା କରନ୍ତି, ଶ୍ରେଷ୍ଠୀ ବାଧ ରହିବେନି କୋଡ଼ିଏ ଲକ୍ଷ ମୁଦ୍ରା ଦେବା ପାଇଁ ।

କାରାବାସର ପ୍ରଥମ ବର୍ଷ ଭିତରେ--ଓକିଲଙ୍କର ଛୋଟ ଛୋଟ ଟିପଣୀଗୁଡ଼ିକରୁ ଯେତେଦୂର ଅନୁମାନ କରିହୁଏ--ନିର୍ଜନତା ଓ ବିରକ୍ତି ଯୋଗୁ ସେ ଭୀଷଣ କଷ୍ଟ ଭୋଗୁଥିଲେ । ଦିନ ରାତି ତାଙ୍କ କୋଠରୀ ଭିତରୁ ପିଆନୋର ଶବ୍ଦ ଶୁଣା ଯାଉଥିଲା । ସେ ମଦ୍ୟ ଓ ତମାଖୁ ଗ୍ରହଣ କଲେ ନି । "ମଦ୍ୟ କାମନା ଜାତ କରାଏ", ସେ ଲେଖିଲେ, "ଏହି କାମନା ହିଁ ହେଉଛି ବନ୍ଦୀର ପ୍ରଧାନ ଶତ୍ରୁ । ତାଛଡ଼ା ଉତ୍କୃଷ୍ଟ ମଦ୍ୟ ଏକାକୀ ଭୋଗ କରିବା ଆହୁରି ବିରକ୍ତିକର ଓ ତମାଖୁ ମଧ୍ୟ ଦୂଷିତ କରିଦିଏ କୋଠରୀର ବାୟୁକୁ । ପ୍ରଥମ ବର୍ଷ ଭିତରେ ହତ୍ୟା ଓ ପ୍ରେମମୂଳକ ଜଟିଳ ଉପନ୍ୟାସ, କଳ୍ପନା ଓ ହାସ୍ୟ ଉଦ୍ରେକକାରୀ ଗଳ୍ପ ପ୍ରଭୃତି ଲଘୁ ପୁସ୍ତକ ସବୁ ଯୋଗାଇ ଦିଆଯାଉଥିଲା ଓକିଲଙ୍କୁ ।

ଦ୍ୱିତୀୟ ବର୍ଷରେ ପିଆନୋର ଶବ୍ଦ ଆଉ ଶୁଣା ଗଲା ନି । ବନ୍ଦୀ କେବଳ ଉତ୍କୃଷ୍ଟ ଗ୍ରନ୍ଥ ସବୁ ଚାହିଁଲେ । ପାଞ୍ଚ ବର୍ଷରେ ପୁଣି

ଶୁଣାଗଲା ସଙ୍ଗୀତ ଓ ବନ୍ଦୀ ମଦ୍ୟ ଦରକାର କଲେ । ଯେଉଁ-ମାନେ ତାଙ୍କୁ ଲକ୍ଷ୍ୟ କରୁଥିଲେ, କହିଲେ ଯେ ବର୍ଷ ତମାମ୍ ସେ କେବଳ ଖାଇ ପିଇ ଓ ମଦ୍ୟପାନ କରି ଶୋଇ ରହୁଥିଲେ ବିଛଣାରେ । ଅନେକ ସମୟରେ ସେ ହାଇ ମାରୁଥିଲେ ଓ ରାଗରେ ନିଜ ସହିତ କଥାବାର୍ତ୍ତା କରୁଥିଲେ । ବହି ସେ ଆଦୌ ପଢ଼ୁନ ଥିଲେ; କିନ୍ତୁ ବେଳେ ବେଳେ ସେ ଲେଖିବାକୁ ବସୁଥିଲେ ରାତିରେ । ଘଣ୍ଟା ଘଣ୍ଟା ଧରି ସେ କ'ଣ ଲେଖୁଥିଲେ ଓ ସକାଳକୁ ଚିରି ଗଦା କରି ଦେଉଥିଲେ ସବୁ । କେତେଥର ତାଙ୍କୁ କାନ୍ଦିବାର ମଧ୍ୟ ଶୁଣା ଯାଇଥିଲା ।

ଷଷ୍ଠ ବର୍ଷର ଦ୍ୱିତୀୟ ଭାଗରେ ବନ୍ଦୀ ଅତି ଉତ୍ସାହରେ ଇତିହାସ, ଦର୍ଶନ ଓ ବିଭିନ୍ନ ଭାଷା ଅଧ୍ୟୟନ ଆରମ୍ଭ କରିଦେଲେ । ସେସବୁ ବିଷୟରେ ଏତେ ଗଭୀର ଭାବରେ ସେ ମଜ୍ଜିଗଲେ ଯେ, ବହି ସଂଗ୍ରହ କରି ତାଙ୍କୁ ଯୋଗାଇବା ଶ୍ରେଷ୍ଠୀଙ୍କ ପକ୍ଷରେ ଦାୟ ହୋଇ ପଡ଼ିଲା । ତାଙ୍କ ଅନୁରୋଧରେ ଚାରିବର୍ଷ ମଧ୍ୟରେ ଛଅଶହ ବହି କିଣା ହୋଇ ଆସିଲା । ସେହି ଆକାଂକ୍ଷା ତାଙ୍କ ଭିତରେ ଉଜ୍ଜୀବିତ ଥିବା ସମୟରେ ଶ୍ରେଷ୍ଠୀ ଏହି ପତ୍ରଟି ବନ୍ଦୀଙ୍କ ନିକଟରୁ ପାଇଥିଲେ, "ପ୍ରିୟ କାରାଧକ୍ଷ, ଛ'ଟି ବିଭିନ୍ନ ଭାଷାରେ ମୁଁ ଏ ପତ୍ର ଆପଣଙ୍କ ପାଖକୁ ଲେଖିଛି । ବିଶେଷଜ୍ଞମାନଙ୍କୁ ତାହା ପରୀକ୍ଷା କରିବା ପାଇଁ ଦେବେ । ଯଦି ଗୋଟିଏ ସୁଦ୍ଧା ଭୁଲ ନ ବାହାରେ, ଦୟା କରି ଗୋଟିଏ ବନ୍ଧୁକ ଫୁଟାଇବାର ବନ୍ଦୋବସ୍ତ କରିବେ ବଗିଚାରେ । ସେହି ଶବ୍ଦରୁ ମୁଁ ଜାଣିପାରିବି ଯେ, ମୋର ପରିଶ୍ରମ ବ୍ୟର୍ଥ ହୋଇନାହିଁ । ଯୁଗ ଯୁଗ ଧରି ବିଭିନ୍ନ ଦେଶର ମନୀଷିଗଣ ବିଭିନ୍ନ ଭାଷାରେ ନିଜକୁ ବ୍ୟକ୍ତ କରି ଯାଇଛନ୍ତି; କିନ୍ତୁ ସମସ୍ତଙ୍କ ଭିତରେ ଜଳୁଛି ସେହି ଏକ ଆଲୋକ-ବର୍ତ୍ତିକା ।

ବର୍ତ୍ତମାନ ମୁଁ ସେ ସମସ୍ତଙ୍କୁ ବୁଝି ପାରୁଛି ! ସତରେ ମୋର ସ୍ୱର୍ଗୀୟ ଆନନ୍ଦ ଆପଣ ଯଦି ଉପଲବ୍ଧି କରି ପାରନ୍ତେ !”
ବନ୍ଦୀଙ୍କର ଇଚ୍ଛା ପୂରଣ କରାହେଲା । ଶ୍ରେଷ୍ଠୀଙ୍କର ଆଦେଶରେ ଦୁଇଥର ବନ୍ଧୁକ ଫୁଟାଗଲା ବଗିଚାରେ ।

କିନ୍ତୁ ଦଶବର୍ଷ ପରେ ବନ୍ଦୀ କେବଳ ନିଶ୍ଚଳ ହୋଇ ଟେବୁଲ ଆଗରେ ବସି ରହିଲେ ଓ ଏକମାତ୍ର ବାଇବେଲ ପୁସ୍ତକ ଖଣ୍ଡିକ ପଢ଼ିବାକୁ ଲାଗିଲେ । ଶ୍ରେଷ୍ଠୀଙ୍କର ବିସ୍ମୟର ସୀମା ରହିଲା ନାହିଁ । ଯେଉଁ ଲୋକ ଛଅଶହ ଦୁର୍ବୋଧ ଓ ଅତି କଠିନ ଗ୍ରନ୍ଥ ମାତ୍ର ଚାରିବର୍ଷ ସମୟ ମଧ୍ୟରେ ଆୟତ୍ତ କରିପାରିଲା, ବୁଝିବାକୁ ସହଜ ଖଣ୍ଡିଏ ସାମାନ୍ୟ ଚଟିବହିକୁ ଶେଷ କରିବା ପାଇଁ ପ୍ରାୟ ବର୍ଷ ଗୋଟିଏ ଲାଗିଗଲା ତାକୁ ! ତା ପରେ ବାଇବେଲର ସ୍ଥାନ ପୂରଣ କଲା ଧର୍ମତତ୍ତ୍ୱ ଓ ଧର୍ମର ଇତିହାସ ସମ୍ବନ୍ଧୀୟ ପୁସ୍ତକ ସବୁ ।

ଶେଷ ଦୁଇବର୍ଷ ବନ୍ଦୀ ଅନିର୍ଦ୍ଦିଷ୍ଟଭାବରେ ଅସଂଖ୍ୟ ବହି ପଢ଼ିବାକୁ ଲାଗିଲେ । ବର୍ତ୍ତମାନ ପ୍ରକୃତିବିଜ୍ଞାନରେ ବ୍ୟସ୍ତ ଅଛନ୍ତି ତ, ପର-ମୁହୂର୍ତ୍ତରେ ତାଙ୍କୁ ପଢ଼ିବାର ଦେଖାଯାଏ ବାଇରନ୍ କିମ୍ବା ସେକ୍ସପିଅରଙ୍କ ଲେଖା । ବେଳେ ବେଳେ ସେ ଚିଠା ଲେଖି ପଠାନ୍ତି ରସାୟନ ଶାସ୍ତ୍ର, ଚିକିତ୍ସା ଶାସ୍ତ୍ର, କୌଣସି ଉପନ୍ୟାସ, ଦର୍ଶନ ଓ ଧର୍ମତତ୍ତ୍ୱ ସମ୍ପର୍କୀୟ କେତେକ ଗ୍ରନ୍ଥ ଏକା ସାଙ୍ଗରେ ପଠାଇଦେବା ପାଇଁ । ବୁଡ଼ିଗଲା ଲୋକ ପରି ସେ ଯେପରି ପ୍ରତି କୁଟାଖିଅକୁ ହାତ ବଢ଼ାଉଥିଲେ; କିନ୍ତୁ ହାତ ପକାଇଲା ମାତ୍ରେ ତାହା ଯେପରି ବୁଡ଼ି ଯାଉଥିଲା ଓ ସଙ୍ଗେ ସଙ୍ଗେ ସେ ହାତ ବଢ଼ାଉ-ଥିଲେ ଅନ୍ୟ ଖିଅ ଉପରକୁ ।

ଏହି ସବୁ କଥା ଗୋଟି ଗୋଟି କରି ମନେ ପକାଉଥିଲେ ଶ୍ରେଷ୍ଠୀ ଓ ଭାବୁଥିଲେ —

"କାଲି ବାରଟା ସମୟରେ ସେ ମୁକ୍ତିଲାଭ କରିବ । ଚୁକ୍ତି ଅନୁସାରେ କୋଡ଼ିଏ ଲକ୍ଷ ମୁଦ୍ରା ଦେବା ପାଇଁ ମୁଁ ବାଧ୍ୟ ହେବି । ଯଦି ମୁଁ ତାହା ଦିଏ, ମୋର ଆଉ ସତ୍ତା ରହିବ ନାହିଁ । ଚିରଦିନ ପାଇଁ ମୋର ସର୍ବନାଶ ହୋଇଯିବ···"

ପନ୍ଦରବର୍ଷ ପୂର୍ବରୁ ଲକ୍ଷକୁ ସେ ସଂପତ୍ତି ଭିତରେ ଗଣୁ ନ ଥିଲେ । ବର୍ତ୍ତମାନ କିନ୍ତୁ ତାଙ୍କର ଜମା ବେଶି ନା ଋଣ ବେଶି ପ୍ରଶ୍ନ ନିଜକୁ ପଚାରିବାକୁ ଭୟ ହୁଏ । ଷ୍ଟକ ଏକ୍‌ସଚେଞ୍ଜର ଜୁଆ-ଖେଳ, ବେପରୁଆ ଭାବ—ଯାହା କବଳରୁ ସେ ଏ ବୃଦ୍ଧ ବୟସରେ ମଧ୍ୟ ରକ୍ଷା ପାଇ ପାରିନାହାନ୍ତି ଓ ବିପଦପୂର୍ଣ୍ଣ ବ୍ୟବସାୟ ପ୍ରବୃତ୍ତି ଯୋଗୁ କ୍ରମେ ତାଙ୍କର ବ୍ୟବସାୟ ନଷ୍ଟ ହୋଇଆସିଛି । ସେହି ନିର୍ଭୀକ, ଆତ୍ମବିଶ୍ୱାସୀ, ଗର୍ବୋଦ୍ଧତ ବ୍ୟବସାୟୀ ବର୍ତ୍ତମାନ ଜଣେ ସାଧାରଣ ବ୍ୟବସାୟୀର ସ୍ତରକୁ ଖସି ଆସିଛନ୍ତି । ବର୍ତ୍ତମାନ ବଜାରର ପ୍ରତ୍ୟେକ ଉତ୍‌ଥାନ ପତନରେ ତାଙ୍କର ହୃତ୍‌କମ୍ପ ହୁଏ ।

"ହାୟରେ ସର୍ବନାଶୀ ପଣ," ଦୁଇ ହାତରେ ମଥା ଚିପି ଧରି ହତାଶ ହୋଇ ବୃଦ୍ଧ ଭାବୁଥିଲେ ।···"କାହିଁକି ଲୋକଟିର ମରଣ ହେଲା ନି ? ମାତ୍ର ଚାଳିଶ ବର୍ଷ ହୋଇଛି ତାକୁ । ଏହାପରେ ମୋର ଶେଷ କପର୍ଦ୍ଦକ ଶୋଷି ନେଇ ସେ ବିବାହ କରିବ, ଜୀବନ ଉପଭୋଗ କରିବ, ଷ୍ଟକ ଏକ୍‌ସଚେଞ୍ଜରେ ଖେଳିବ ଜୁଆ ଓ ଈର୍ଷାନ୍ୱିତ ଭିକାରି ପରି ମୁଁ ତାକୁ ଚାହିଁ ରହିଥିବାବେଳେ ସେ ଆଗେଇ ଆସିବ ମୋତେ ସାହାଯ୍ୟ କରିବାକୁ ଓ ପ୍ରତିଦିନ ସେହି ଏକ କଥା ତା ପାଖରୁ ମୁଁ ଶୁଣିବି—'ଜୀବନରେ ମୋର ସୁଖ ସମୃଦ୍ଧି ପାଇଁ ଆପଣଙ୍କଠାରେ ମୁଁ ଅଶେଷ କୃତଜ୍ଞ । ବର୍ତ୍ତମାନ ମୋତେ ଆପଣଙ୍କୁ କିଛିତ ସାହାଯ୍ୟ କରିବାକୁ ଅନୁମତି ଦିଅନ୍ତୁ ।' ନା-ନା-ଏହା ଅସହ୍ୟ ! ଦେଉଳିଆ ଅବସ୍ଥା ଓ ଏ ଅପମାନରୁ

ବଞ୍ଚିବାର ଏକମାତ୍ର ପନ୍ଥା ହେଉଛି ଯେ—ସେ ଲୋକଟିର ମରିଯିବା ଏକାନ୍ତ ଉଚିତ।"

ଘଡ଼ିରେ ସେତିକବେଳେ ଠଂ ଠଂ ତିନିଟା ବାଜିଲା। ଶ୍ରେଷ୍ଠୀ ଶୁଣୁଥିଲେ। ଘରେ ସମସ୍ତେ ଶୋଇ ପଡ଼ିଛନ୍ତି। ଝରକା ବାହାରୁ କେବଳ ଶୁଣା ଯାଉଚି ଶୀତରେ ଜମାଟ ବାନ୍ଧି ଯାଇଥିବା ଗଛପତ୍ର-ଗୁଡ଼ିକର ଆକୁଳ ଧ୍ୱନି। ନିଃଶବ୍ଦରେ ଓ ଖୁବ୍ ସାବଧାନରେ ଶ୍ରେଷ୍ଠୀ ସିନ୍ଧୁକ ଖୋଲିଲେ ଏବଂ ପନ୍ଦରବର୍ଷ ଧରି ଛୁଆଁ ହୋଇ ନ ଥିବା ବଗିଚାଘରର ଚାବିକାଠି ତା ଭିତରୁ କାଢ଼ିଆଣି କୋଟ ଘୋଡ଼ିହୋଇ ସେ ବାହାରି ଆସିଲେ ଘର ଭିତରୁ। ବାହାରେ ଭୀଷଣ ଥଣ୍ଡା, ଗାଢ଼ର ଅନ୍ଧକାର। ବର୍ଷା ହେଉଥିଲା। ଗୋଟିଏ ଆର୍ଦ୍ର କଣକଣିଆ ପବନ ହାଲ୍ଲା କରୁଥିଲା ବଗିଚା ଭିତରେ ଓ ଗଛପତ୍ରଗୁଡ଼ିକୁ ମୁହୂର୍ତ୍ତେ ବିଶ୍ରାମ ଦେଉ ନ ଥିଲା। ଯେତେ ନିରେଖି କରି ଚାହିଁଲେ ମଧ୍ୟ ଶ୍ରେଷ୍ଠୀ ବଗିଚାର ଗଛପତ୍ର, ଭୂଇଁ, ପଥରର ଧଳା ପ୍ରତିମୂର୍ତ୍ତି କିମ୍ବା ବଗିଚା ଘରଟିକୁ କୌଣସି ପ୍ରକାରେ ଦେଖି ପାରିଲେ ନାହିଁ। ବଗିଚାଘର ପାଖରେ ପହଞ୍ଚି ସେ ପ୍ରହରୀକୁ ଦୁଇଥର ଡାକିଲେ। କୌଣସି ଉତ୍ତର ମିଳିଲା ନାହିଁ। ନିଶ୍ଚୟ ଏହି ବର୍ଷାରାତି ଓ କଦର୍ଯ୍ୟ ପାଗରୁ ରକ୍ଷା ପାଇବାପାଇଁ ସେ ରୋଷାଇଘରେ କିମ୍ବା ସରଘରେ ଯାଇ ଆଶ୍ରୟ ନେଇଛି ଓ ବର୍ତ୍ତମାନ ଶୋଇପଡ଼ିଛି ବୋଧହୁଏ।

ଶ୍ରେଷ୍ଠୀ ଭାବିଲେ, "ମୁଁ ଯଦି ନିର୍ଭୟରେ କାର୍ଯ୍ୟ ସଂପନ୍ନ କରିପାରେ, ସମସ୍ତଙ୍କ ସନ୍ଦେହ ପ୍ରଥମେ ଏହି ପ୍ରହରୀ ଉପରେ ନିଶ୍ଚୟ ପଡ଼ିବ।"

ଅନ୍ଧାରରେ ପାହାଚ ଓ କାନ୍ଥ ଦରାଣ୍ଡି ଦରାଣ୍ଡି ସେ ବଗିଚା-ଘରର ହଲ୍ ଭିତରେ ପହଞ୍ଚିଗଲେ। ତା'ପରେ ଗୋଟିଏ ଅଣ୍ଡେସାରିଆ ରାସ୍ତା ଧରି ସେ ଦିଆସିଲି ଜାଳିଲେ। କୌଣସି ଜନପ୍ରାଣୀର ଚିହ୍ନ-

ବର୍ଣ୍ଣ ନାହିଁ । ଫାଙ୍କା ବନ୍ଧଣା ଗୋଟିଏ ସେଠାରେ ପଡ଼ିଛି । ଗୋଟିଏ ଅନ୍ଧାରୁଆ କୋଣରେ ମିଞ୍ଜି ମିଞ୍ଜି ହୋଇ ଜଳୁଛି ଗୋଟିଏ ଲଣ୍ଠନ ଚଲ୍ଲୀ । ବନ୍ଦୀର କୋଠରୀ ଦୁଆରରେ ଥୁଆ ହୋଇଥିବା ଜଉମୁଦ ଅକ୍ଷୁଣ୍ଣ ରହିଛି ପୂର୍ବପରି ।

ଦିଆସିଲ କାଠି ଲିଭିଗଲା । ଉତ୍ତେଜନାରେ ଥରି ଥରି ବୃଦ୍ଧ ଉଙ୍କିମାରି ଚାହିଁଲେ ଝରକା ଭିତରକୁ ।

ବନ୍ଦୀର କୋଠରୀ ଭିତରେ ମହମବତି ଗୋଟିଏ ଜଳୁଛି । ବନ୍ଦୀ ନଜେ ବସିଛନ୍ତି ଟେବୁଲ ଆଗରେ । କେବଳ ତାଙ୍କର ପିଠି ମୁଣ୍ଡ, ଚୁଟି ଓ ହାତ ଦୁଇଟି ବାହାରକୁ ଦେଖା ଯାଉଛି । ଖୋଲା ବହି ସବୁ ବିଞ୍ଚି ହୋଇ ପଡ଼ିଛି ଟେବୁଲ, ଚେୟାର ଓ ଗାଲିଚା ଉପରେ ।

ପାଞ୍ଚମିନଟ ଅତିକ୍ରମ ହୋଇଗଲା । ବନ୍ଦୀ ନିଶ୍ଚଳ, ବସିବା ସ୍ଥାନରେ ଯେପରି ପଥର ପାଲଟି ଯାଇଛନ୍ତି । ପନ୍ଦରବର୍ଷର କାରାବାସ ତାଙ୍କୁ ସ୍ପନ୍ଦନହୀନ ଭାବରେ ବସି ରହିବାକୁ ଶିକ୍ଷା ଦେଇଛି । ଶ୍ରେଷ୍ଠୀ ଝରକାରେ ଆଙ୍ଗୁଳିରେ ଆଘାତ କଲେ । ବନ୍ଦୀଙ୍କର କିନ୍ତୁ ତାହା କର୍ଣ୍ଣଗୋଚର ହେଲାନାହିଁ । ପୂର୍ବପରି ସେ ନୀରବ, ନିଶ୍ଚଳ । ଶ୍ରେଷ୍ଠୀ ତାପରେ ସାବଧାନରେ ଜଉମୁଦ ଭାଙ୍ଗି ତାଲା ଖୋଲିଲେ । କେଉଁ କାଳର କଳଙ୍କିଖିଆ ଚାବି ରୁକ୍ଷ ଚିତ୍କାର କରି ଉଠିଲା । କବାଟ ମଧ୍ୟ ଜଣାଇଲା ପ୍ରତିବାଦ । ଶ୍ରେଷ୍ଠୀ ଭାବିଲେ ଏଥିର ବନ୍ଦୀ ବିସ୍ମୟରେ ଚିତ୍କାର କରି ଉଠିବେ ଓ ସଙ୍ଗେ ସଙ୍ଗେ ଦଉଡ଼ ଆସିବେ ନିଶ୍ଚୟ; କିନ୍ତୁ ତିନ ମିନଟ ଅତୀତ ହୋଇଗଲା । ଘର ଭିତରେ ପରିବର୍ତ୍ତନର କୌଣସି ସୂଚନା ମିଳିଲାନାହିଁ । ଶ୍ରେଷ୍ଠୀ ଭିତରକୁ ପଶିବା ପାଇଁ ମନସ୍ଥ କଲେ ।

ଟେବୁଲ ଆଗରେ ବସିଥିବା ମଣିଷଟିର ସାଧାରଣ ମଣିଷ ସହିତ କୌଣସି ସାଦୃଶ୍ୟ ନ ଥିଲା, ତାହା କଙ୍କାଳ ମାଳ ଉପରେ ଚମତ୍କାର ଗୋଟିଏ ଶକ୍ତ ଗୁଡ଼ଣି । ମୁହଁରେ ମୁହେଁ ଦାଢ଼ି, ମୁଣ୍ଡରେ ସ୍ତ୍ରୀଲୋକଙ୍କ ପରି ଲମ୍ବା କୁଞ୍ଚୁକୁଞ୍ଚିଆ ବାଳ, ମୁହଁ ନଷ୍ଟପ୍ରଭ, ଗାଲ ପଶି ଯାଉଛି କେଉଁ ଭିତରକୁ, ଅଣଓସାରିଆ ପିଠି ଅସ୍ୱାଭାବିକ ଲମ୍ବା ମନେ ହେଉଛି ଓ ଯେଉଁ ହାତ ଦୁଇଟି ଉପରେ ବନ୍ଦୀ ତାଙ୍କର ବାଳୁଆ ମୁଣ୍ଡ ଭରା ଦେଇ ବସିଛନ୍ତି, ତାହା ଏତେ ଦୁର୍ବଳ ଓ ଚର୍ମସର୍ବସ୍ୱ ଯେ, ଦେଖିବାକୁ ମଧ୍ୟ କଷ୍ଟ ହେଉଛି । ମୁଣ୍ଡର ସବୁ ବାଳ ଧଳା ହୋଇଯାଇଛି ଝୋଟ ପରି ଓ ତାଙ୍କର ଶୀର୍ଣ୍ଣ ଜରାଗ୍ରସ୍ତ ମୁହଁ ଦେଖି କେହି କଦାପି ବିଶ୍ୱାସ କରିପାରିବ ନାହିଁ, ତାଙ୍କୁ ମାତ୍ର ଚାଳିଶ ବର୍ଷ ହୋଇଛି ବୋଲି । ନଇଁ ପଡ଼ିଥିବା ମଥା ସାମ୍ନାରେ ଗୋଟିଏ କାଗଜ ପଡ଼ିଛି ଟେବୁଲ ଉପରେ ଛୋଟ ଛୋଟ ଅକ୍ଷରରେ ସେଥିରେ କ'ଣ ଲେଖା ହୋଇଛି ।

"ହାୟରେ ସୟତାନ !" ଶ୍ରେଷ୍ଠୀ ଭାବିଲେ । "ବିଚରା ଶୋଇ ପଡ଼ିଛି ଓ ବୋଧହୁଏ ମସ୍‌ଗୁଲ୍ ଅଛି ଲକ୍ଷ ମୁଦ୍ରାର ସ୍ୱପ୍ନରେ । ଏହି ଅଧମରା ଜୀବଟିକୁ ନେଇ ବିଛଣା ଉପରକୁ କେବଳ ଫିଙ୍ଗି ଦେବାର କଥା ଓ ତାପରେ ତକିଆରେ ତା ମୁହଁ ଚିପି ରଖି ନିଃଶ୍ୱାସ ଯନ୍ତ୍ର ବନ୍ଦ କରି ଦିଆଯାଏ, ଯେତେ ବିଚକ୍ଷଣ ଡାକ୍ତର ହେଲେ ମଧ୍ୟ ସେ ଅସ୍ୱାଭାବିକ ମୃତ୍ୟୁର ସନ୍ଧାନ କଦାପି କରି ପାରିବନାହିଁ; କିନ୍ତୁ ପ୍ରଥମେ ପଢ଼ା ଯାଉ ସେ କ'ଣ ଲେଖିଛି ।"

ଟେବୁଲ ଉପରୁ କାଗଜ ଖଣ୍ଡିକ ଉଠାଇ ନେଇ ଶ୍ରେଷ୍ଠୀ ପଢ଼ିବାକୁ ଲାଗିଲେ—

"କାଲି ବାରଟାବେଳେ ମୁଁ ମୁକ୍ତି ପାଇବି ଓ ଲୋକମାନଙ୍କ ସହ ମିଶିବାର ଅଧିକାର ପାଇବି; କିନ୍ତୁ ଏ କୋଠରୀରୁ ବାହାରି

ମୁକ୍ତ ଆଲୋକ ଦର୍ଶନ କରିବା ପୂର୍ବରୁ ଆପଣଙ୍କୁ ଦୁଇଗୋଟି ପଦ କଥା ମୁଁ କହିବା ଦରକାର ମନେ କରୁଛି । ସମ୍ପୂର୍ଣ୍ଣ ସଚେତନ ଥାଇ ଓ ସର୍ବଦ୍ରଷ୍ଟା ଭଗବାନଙ୍କୁ ସାକ୍ଷୀ ରଖି ମୁଁ କହୁଛି ଯେ— ସ୍ୱାଧୀନତା, ଜୀବନ, ସ୍ୱାସ୍ଥ୍ୟ ଓ ଆପଣଙ୍କର ବହିଗୁଡ଼ିକ ଯାହାକୁ ପୃଥିବୀର ଆଶୀର୍ବାଦ ବୋଲି କହେ, ମୁଁ ଘୃଣା କରେ ସେ ସମସ୍ତକୁ ।

"ପନ୍ଦରବର୍ଷ ଧରି ଗଭୀର ଅଧ୍ୟବସାୟ ସହ ମୁଁ ପାର୍ଥିବ ଜୀବନ ବିଷୟରେ ଅଧ୍ୟୟନ କରି ଆସିଛି । ଅବଶ୍ୟ ଏହା ସତ୍ୟ ଯେ, ଏହି ସମୟ ଭିତରେ ମୁଁ ପୃଥିବୀ ଦେଖିନି କିମ୍ବା ଲୋକମାନଙ୍କର ସଂସ୍ପର୍ଶରେ ଆସିନି; କିନ୍ତୁ ଆପଣଙ୍କର ବହିଗୁଡ଼ିକରୁ ମୁଁ ପାନ କରିଛି ଅମୀୟ ସୁଧା, ଶିକାର କରି ବୁଲିଛି ବନ୍ୟ ବରାହ ଓ ହରିଣ, ଗୀତ ଗାଇଛି; ଭଲ ପାଇଛି କେତେ ତରୁଣୀଙ୍କୁ···ଓ ଆପଣଙ୍କ କବିକଳ୍ପନାର ଯାଦୁକରୀ ସୃଷ୍ଟି ପରି ସ୍ୱର୍ଗୀୟ ମେଘମାଳା ଭିତରେ ମୋ ପାଖକୁ ଭାସି ଭାସି ଆସିଛନ୍ତି କେତେ ସୁନ୍ଦରୀ ରୂପସୀ; କାନେ କାନେ କହି ଯାଆନ୍ତି କେତେ ମଧୁର, କେତେ ବିଚିତ୍ର ଗଳ୍ପ; ପାଗଳ କରି ଦିଅନ୍ତି ମୋତେ, ମତୁଆଲି କରି ଦିଅନ୍ତି । ଆପଣଙ୍କ ବହିଦ୍ୱାରା ମୁଁ ଉଠି ଯାଇଛି ଏଲବ୍ରୁଜ୍ ଓ ମାଉଣ୍ଟ ବ୍ଲାକ୍‌ର ଉଚ୍ଚତମ ଚୂଡ଼ା ଉପରକୁ ଓ ତା ଉପରେ ଥାଇ ଦେଖିଛି ପ୍ରଭାତର ବିଚିତ୍ର ସୂର୍ଯ୍ୟୋଦୟ, ସନ୍ଧ୍ୟାର ପରିପ୍ଲୁତ ଆକାଶ ଓ ଗିରିବନ ଉପରେ ସୁନେଲି ବର୍ଣ୍ଣ ବିଭାର ବିପୁଳ ପ୍ଲାବନ; ତାହାରି ଉପରେ ଥାଇ ମୁଁ ଦେଖିଛି ମେଘ ଦେହରେ ଚପଳାର କ୍ରୀଡ଼ା, ଦେଖିଛି ତଳର ଶ୍ୟାମଳ ବନାନୀ, ନଦୀ-ହ୍ରଦ-ନଗର-ପ୍ରାନ୍ତର, ଶୁଣିଛି କୋକିଳ କଣ୍ଠର କୂଜନ ଓ ଅପୂର୍ବ ବୀଣାବାଦନ ଓ ଈଶ୍ୱରଙ୍କର ବାର୍ତ୍ତା ଦେବାପାଇଁ ଦିବ୍ୟ ସୁନ୍ଦର ଦେବଦୂତମାନେ ମୋ ପାଖକୁ ଉଡ଼ି ଉଡି ଆସନ୍ତି, ମୁଁ ସଂସ୍ପର୍ଶ କରିଛି ସେମାନଙ୍କର ପରି

ସବୁ ।···ଆପଣଙ୍କ ବନ୍ଧୁ ଭିତରେ ମୁଁ ନିଜକୁ ନିକ୍ଷେପ କରିଛି ଅତଳ ଗହ୍ୱର ଭିତରକୁ, କେତେ ଅଦ୍‌ଭୁତ କାର୍ଯ୍ୟ କରିଛି, କେତେ ନଗର ଜାଳି ପୋଡ଼ି ମିଶାଇ ଦେଇଛି ମାଟିରେ, ପ୍ରଚାର କରିଛି, ନୂତନ ଧର୍ମ ଓ ଜୟ କରି ଯାଇଛି ରାଜ୍ୟ ପରେ ରାଜ୍ୟ ।···

"ଆପଣଙ୍କ ବନ୍ଧୁ ସବୁ ମୋତେ ଗରୀୟାନ କରିଛି ଜ୍ଞାନରେ । ଯୁଗ ଯୁଗର ପୁଞ୍ଜୀଭୂତ କଳ୍ପନା ସଙ୍କୁଚିତ ହୋଇଯାଇଛି ମୋର ଏହି ଶ୍ରେଷ୍ଠ ଖପୁରିଟି ଭିତରେ । ମୁଁ ଜାଣେ ଯେ, ଆପଣ ସମସ୍ତଙ୍କଠାରୁ ମୁଁ ବହୁଗୁଣରେ ବୁଦ୍ଧିମାନ୍, ବହୁଗୁଣରେ ଜ୍ଞାନୀ ।

"ମୁଁ ଘୃଣା କରେ ଆପଣଙ୍କର ସେହି ବନ୍ଧୁଗୁଡ଼ିକୁ, ଘୃଣା କରେ ଆପଣଙ୍କର ସମସ୍ତ ପାର୍ଥିବ ଆଶୀର୍ବାଦ ଓ ପାର୍ଥିବ ଜ୍ଞାନକୁ । ସବୁ ମିଥ୍ୟା, ଅବାସ୍ତବ କଳ୍ପନା, ମାୟା, ମରୀଚିକା । ଜ୍ଞାନପାଇଁ, ସୁନ୍ଦରପଣ ପାଇଁ ଆପଣ ଗର୍ବ କରନ୍ତୁ; ମୁହୂର୍ତ୍ତକ ଭିତରେ ମୃତ୍ୟୁ ଆପଣଙ୍କୁ ନିଶ୍ଚିହ୍ନ କରିଦେବ ଧରାପୃଷ୍ଠରୁ, ପାଣିରେ ଗାର ପରି ଆପଣ ଲିଭିଯିବେ ଓ ଲିଭିଯିବ ଆପଣଙ୍କର ସମସ୍ତ ବୈଭବ, ଇତିହାସ, ଜମାଟ ବାନ୍ଧିଯିବ ଆପଣଙ୍କ ପ୍ରତିଭାଶାଳୀ ବ୍ୟକ୍ତିମାନଙ୍କର ନଶ୍ୱରତା—ଗୋଡ଼ମାଟିର ଏହି ଗୋଲକ ସାଥିରେ ଧ୍ୱଂସ ପାଇଯିବ ସବୁ ।

"ଆପଣମାନେ ପାଗଳ; ଆପଣମାନେ ଭୁଲ ରାସ୍ତାରେ ଧାଇଁଛନ୍ତି । ମିଥ୍ୟା ଆପଣଙ୍କ ନିକଟରେ ସତ୍ୟ, କୁତ୍ସିତ ହେଉଛି ସୌନ୍ଦର୍ଯ୍ୟର ଆକାର । ଆଉ ଓ କମଳା ଗଛରେ ବେଙ୍ଗ କମ୍ପା ଝିଟିପିଟି ଫଳିଲେ ଓ ଗୋଲାପ ଝାଳୁଆ ଘୋଡ଼ା ପରି ଗନ୍ଧ କଲେ, ବିସ୍ମୟରେ ଆପଣମାନେ ଯେପରି ଅଭିଭୂତ ହୋଇଯିବେ, ମୁଁ ମଧ୍ୟ ସେହିପରି ଆପଣଙ୍କର ଗତି ଦେଖି ଅବାକ୍ ହୋଇଯାଉଛି ।

ସ୍ବର୍ଗବନ୍ଦନମୟରେ ପୃଥିବୀ ଆପଣ ଗଢ଼ିଛନ୍ତି । ମୁଁ ଆପଣମାନଙ୍କୁ ବୁଝିବାକୁ ମଧ୍ୟ ଚାହୁଁନି ।

"ଯାହା ଆପଣଙ୍କର ଜୀବନସର୍ବସ୍ବ, ତାହା ପ୍ରତି ମୋର ଯେ କି ଘୃଣା, କି ଘୋର ବିତୃଷ୍ଣା, କେବଳ କଥାରେ ନୁହେଁ— କାର୍ଯ୍ୟରେ ମୁଁ ତାହା ପ୍ରମାଣ କରି ଦେଇପାରେ । କୋଡ଼ିଏ ଲକ୍ଷ ମୁଦ୍ରାର ଆଶା ବିଷ ପରି ମୁଁ ପରିହାର କରୁଛି । ତାକୁ ନେଇ ମୁଁ ଦିନେ ବୈକୁଣ୍ଠର ସ୍ବପ୍ନ ରଚନା କରୁଥିଲି; କିନ୍ତୁ ବର୍ତ୍ତମାନ ମୁଁ ତାକୁ ଘୃଣା କରେ, ତୁଚ୍ଛ ମନେକରେ । ସେହି ଅଧିକାରରୁ ନିଜକୁ ବଞ୍ଚିତ କରିବା ପାଇଁ ନିର୍ଧାରିତ ଚୁକ୍ତିର ପାଞ୍ଚମିନିଟ ପୂର୍ବରୁ ମୁଁ ଏଠାରୁ ପଳାଇ ଯିବି ଓ ତଦ୍ଦ୍ବାରା ଚୁକ୍ତି ଭଙ୍ଗ କରିବି ।"

ପଢ଼ି ସାରି ଶ୍ରେଷ୍ଠୀ ଟେବୁଲ ଉପରେ କାଗଜ ଖଣ୍ଡିକ ରଖି-ଦେଲେ ଓ ଅଦ୍ଭୁତ ଲୋକଟିର ଶିର ଚୁମ୍ବନ କରି କାନ୍ଦିବାକୁ ଲାଗିଲେ । ଧୀରେ ଧୀରେ ସେ ବାହାରି ଆସିଲେ ଘର ଭିତରୁ । ଜୀବନରେ ସେ ବହୁବାର ଖିଷଣ ଭୁଲ କରିଛନ୍ତି; ସେଥିପାଇଁ ନିଜକୁ ଘୃଣା କରିଛନ୍ତି, ହେୟ ମନେ କରିଛନ୍ତି; କିନ୍ତୁ ବର୍ତ୍ତମାନ ପରି ନିଜ ଉପରେ ଏତେ ଗଭୀର ଘୃଣା ଓ ଵିତୃଷ୍ଣାଭାବ କେବେ ଜନ୍ମି ନ ଥିଲା ତାଙ୍କର । ଘରକୁ ଫେରି ଆସି ସେ ନିଜକୁ ଅଜାଡ଼ି ଦେଲେ ବିଛଣା ଉପରେ; କିନ୍ତୁ ଅଶ୍ରୁ ଓ ଉତ୍ତେଜନା ଭିତରେ ସେ ବହୁ ସମୟ ପର୍ଯ୍ୟନ୍ତ ଆଉ ନିଦ୍ରାର ଆଶ୍ରୟ ନେଇ ପାରିଲେ ନାହିଁ ।

ତହିଁ ଆରଦିନ ପାହାନ୍ତି ସକାଳୁ ଜଗୁଆଳି ଧାଇଁ ଧାଇଁ ଆସି ଖବର ଦେଲା ଯେ, ସେ କୋଠରୀ ଭିତରେ ରହୁଥିବା ଲୋକ ପ୍ରଥମେ ଝରକା ଭିତରେ ଦେଇ ବାହାରକୁ ଆସିଲା ଓ ବଗିଚାର ଫାଟକ ପର୍ଯ୍ୟନ୍ତ ଯାଇ ତା'ପରେ ପଳାଇଗଲା କୁଆଡ଼େ । ଶ୍ରେଷ୍ଠୀ

ତା ସାଙ୍ଗରେ ବଗିଗୃଧରକୁ ଗଲେ ଓ ବନ୍ଦୀର ପଳାୟନ ବିଷୟରେ ନିଃସନ୍ଦେହ ହେଲେ । ଅକାରଣ ଗୁଜବକୁ ଏଡ଼ିବା ପାଇଁ ଟେବୁଲ ଉପରୁ ସେ ନେଇ ଆସିଲେ ସେହି ସ୍ୱତ୍ୱତ୍ୟାଗ ପତ୍ରଟିକୁ ଓ ଫେର ଆସି ତାକୁ ବନ୍ଦକରି ରଖିଲେ ଲୁହାର ସିନ୍ଦୁକ ଭିତରେ ।

---

# ରିକ୍‌ସା

## ଶ୍ରୀ ଅନନ୍ତ ପ୍ରସାଦ ପଣ୍ଡା

କଟକ ସହରରେ ପ୍ରଥମେ ଯେତେବେଳେ ହାତଟଣା ରିକ୍‌ସା ଚାଲୁ ହେଲା, ସେତିକବେଳୁ ଚୂଇଁ ବେହେରା ରିକ୍‌ସା ଟଣା ଆରମ୍ଭ କଲାଣି । ସେତେବେଳେ ଚୂଇଁର ବୟସ ଥିଲା ମୋଟେ ଚବିଶ କି ପଚିଶ । .ଗଜା ଟୋକା । ମୁଣ୍ଡରେ ଗୁଚ୍ଛେ ଲମ୍ବର ବାବୁରି ବାଳ କପାଳ ଉପରେ ଊହୁଙ୍କି ପଡ଼ୁଥାଏ; କିନ୍ତୁ ମୁଣ୍ଡର ପଛପାଖଟା ଏକବାରେ ଚଞ୍ଚା । ହାତଟଣା ରିକ୍‌ସା ଧରି କଟକ ସହରର ସେତେବେଳର ନାଳଧୂଳିଆ ରାସ୍ତା ଉପରେ ଚୂଇଁ ବେହେରା ଯେତେବେଳେ ଧାଇଁ ଧାଇଁ ଯାଉଥାଏ, ଆଉ ଗୋଟିଏ ହାତରେ ଘଣ୍ଟିଟାକୁ ଠଂ ଠଂ କରି ବଜାଇ ଦେଇ ଆର ହାତରେ ଆଖିପତା ଉପରୁ ବାବୁରି ବାଳଗୁଡ଼ାକୁ ଉପରକୁ ଟେକିଦେଇ ଝାଳ ପୋଛି ପକାଉଥାଏ, ସେତିକବେଳେ ତା ପାଖ ଦେଇ ସାଇକେଲ ଚଢ଼ାଳୀ କଲେଜ ଟୋକାଏ ସାଇକେଲ୍‌ ଘଣ୍ଟି ବଜାଇ ପବନ ବେଗରେ ଧାଇଁଥାନ୍ତି । ଚୂଇଁ ବେହେରା ସେମାନଙ୍କୁ ରାସ୍ତା ଛାଡ଼ିଦେଇ ରାସ୍ତାର ବାଁ ପାଖକୁ ଘୁଞ୍ଚିଯାଏ । ଟିକିଏ ଡେରି ହେଲେ, ପଛରୁ ସାଇକେଲ୍‌ ଚଢ଼ାଳୀଟିଏ ଡାକ ପକାଏ, 'ଏ ରିକ୍‌ସାବାଲା, ହଟୋ ହଟୋ ।' ବିଚରା ଚୂଇଁ ପୁଣି ରାସ୍ତା ପାଖକୁ ଘୁଞ୍ଚିଯାଏ । ସେତେବେଳେ ତା'ର ମନେହୁଏ, ତା ହାତଟଣା ରିକ୍‌ସା ଦେହରେ ଯଦି ଏମିତିକା ଗୋଟାଏ ସାଇକେଲ୍‌ ଯୋଖି ଦେଇ ହୁଅନ୍ତା ତେବେ ସେ ଆଉ ଏକ ସାଇକେଲ୍‌ ଚଢ଼ାଳିଦଳଙ୍କ ଆଗରେ ଏତେ ହୀନସ୍ତା ହୁଅନ୍ତା ନାହିଁ । ସେ ବି ସେମାନଙ୍କ ସାଙ୍ଗରେ ଦୌଡ଼ ଆରମ୍ଭ କରିଦିଅନ୍ତା । ସେତେବେଳେ

ସେ ହୁଏତ ବହୁତ ବେଶି ରୋଜଗାର କରିପାରନ୍ତା; କାରଣ ଗୃହଧର୍ମାଚୌକରୁ ରେଲ ଷ୍ଟେସନ ଯାଏ ଯିବାପାଇଁ ହାତଟଣା ରିକ୍‌ସା ଧରି ତାକୁ ପ୍ରାୟ ଘଣ୍ଟାଏ ଲାଗିଯାଉଛି—ସାଇକେଲ ଯୋଖା ରିକ୍‌ସା ହେଲେ ଅନ୍ତତଃ ଅଧଘଣ୍ଟାଏ ଭିତରେ ସେ ଯାଇ ଷ୍ଟେସନ ଧରିପାରନ୍ତା । ତାହାହେଲେ ଯାହା ସେ ପାଉଛି, ତାର ଦ୍ୱିଗୁଣ ଅନ୍ତତଃ ସେ ପାଇପାରନ୍ତା ଦିନକ ଭିତରେ । ସେତେବେଳେ ସେ ରିକ୍‌ସା ମାଲିକକୁ ଦୁଇଟଙ୍କା ରିକ୍‌ସା ଭଡ଼ାଦେଇ ସୁଦ୍ଧା ଦିନକୁ ଆହୁରି ଦୁଇ ତିନ ଟଙ୍କା ବଳକା କରି ପାରୁଥିଲା; କାରଣ କଟକରେ ସେତେବେଳେ ରିକ୍‌ସା ସଂଖ୍ୟା ଥିଲା ବହୁତ କମ୍ । ସେଇ ଅନୁପାତରେ ଭଡ଼ା ବି ଥିଲା ଟିକିଏ ବେଶି । ଚୁଇଁ ବେହେରା ଭାବେ, ଯଦି ସାଇକେଲ ରିକ୍‌ସାଟାଏ ହୁଅନ୍ତା, ତେବେ ସେ ନିଶ୍ଚୟ ମାଲିକ ଭଡ଼ା ଦେଇସାରି ଦିନକୁ ଚାରି ପାଞ୍ଚ ଟଙ୍କାରୁ ଅଧିକ ଆୟ କରି ପାରନ୍ତା । ଚୁଇଁ ବେହେରାର କଳ୍ପନା ତା'ପରେ ଉଡ଼ି ଉଡ଼ି ଯାଏ କେତେ ଉପରକୁ । ମନେ ମନେ ସେ କେତେ ଆକାଶ-ସୌଧ ତୋଳି ପକାଏ । ଏତେ ଆୟ ହେଲେ ସେ କ'ଣ କରିବ ? ପହିଲେ ଯେଉଁ ଭଙ୍ଗାରୁଳିଆ ଖଣ୍ଡିକରେ ସେ ରହୁଛି, ସେ ଖଣ୍ଡିକ ଭାଙ୍ଗି ଭଲ ଘର ଦି'ବଖରା ତୋଳିବ । ତା ସ୍ତ୍ରୀ ଶାଗୁଆ ପାଇଁ ସୁନାର ନାକଚଣା ଦିଖଣ୍ଡ ଗଢ଼ିଦେବ, ଆଉ ତା ପୁଅ ରଙ୍ଗିଆ—

ଠିକ୍ ଏତିକବେଳେ ପେଁ ପେଁ ଶିଙ୍ଗା ବଜାଇ ଗୋଟାଏ ମୋଟର ଗାଡ଼ି ଧୂଳି ଉଡ଼ାଇ ସେଇ ରାସ୍ତାରେ ଧାଇଁଯାଏ । ବିଚରା ଚୁଇଁ ଆଉ ବାବୁଙ୍କ ବାଳ ଉପରେ ଇଞ୍ଚେ ବହଳର ନାଲିଧୂଳି ମାଡ଼ିଯାଏ । ନାକରେ ପାଟିରେ ମେଞ୍ଚା ମେଞ୍ଚା ଧୂଳି ବି ପଶିଯାଏ । ବିରକ୍ତିରେ ଚୁଇଁ ଆଉ ନାକ ଉପରକୁ ଉଠିଯାଏ—ତାର ଭାବନା ଉପରେ ହଠାତ୍ ଲାଗେ ଗୋଟେ ଧକ୍‌କା । ଧେତ୍, ଏ ମୋଟର

ଡ୍ରାଇଭର ଗୁଡ଼ାଙ୍କର ତ ବହପ କମ୍ ନୁହେଁ ? ମୋଟର ଗାଡ଼ିଟାରେ ବସି ସେ ଚକଟାକୁ ଧରିଲେ ତ ତାଙ୍କ ଆଖିରେ ଆଉ ଇନ୍ଦ୍ର, ଚନ୍ଦ୍ର ଦେଖାଯାଆନ୍ତିନ । ଓଃ କି ଜୋରରେ ଧାଇଁ ଯାଉଛନ୍ତି ସେ ମୋଟର ଗୁଡ଼ାକ ! ଆଚ୍ଛା ହେଉ, କିଛି ପରବା ନାହିଁ । ପୁଅ ରଙ୍ଗିଆକୁ ହେଲା ପାଞ୍ଚ ବର୍ଷ । ଆଉ ବର୍ଷ କେଇଟା ଗଲେ ସେ ବେଶ୍ ଜୁଆନ୍ ହୋଇ ଉଠିବ । ସେତେବେଳକୁ ଚୁଇଁଆ ତାକୁ ନିଶ୍ଚୟ ଗୋଟିଏ ମୋଟର ଡ୍ରାଇଭର କରାଇ ଦେବ । ତାହା ହେଲେ······

ଚୁଇଁ ବେହେରା ଆଉ ଭାବିପାରେନାହିଁ । ଆନନ୍ଦରେ ତା ମୁହଁରୁ ମୁରୁକି ହସଟିଏ ବାହାରି ପଡ଼େ । ସେ ନାଲି ସଡ଼କର ତାତିଲା ଧୂଳିକୁ ଖିଆଲ ନ ରଖି ଧାଇଁ ଚାଲେ ତା'ର ଗନ୍ତବ୍ୟ ମାର୍ଗରେ ।

ଦିନ ଗଡ଼ିଯାଏ । କଟକ ସହର ନାଲି ଧୂଳିଆ ରାସ୍ତା ବଦଳରେ ପିଚ କଳାରାସ୍ତା ଗଢ଼ା ହୁଏ । ହାତଟଣା ରିକ୍‌ସା ବଦଳରେ ସାଇକେଲ୍ ରିକ୍‌ସା ଚାଲିବା ଆରମ୍ଭ ହୁଏ । ଚୁଇଁ ବେହେରା ହାତଟଣା ରିକ୍‌ସା ଛାଡ଼ି ସାଇକେଲ-ରିକ୍‌ସା ଟାଣିବା ଆରମ୍ଭ କରିଦେଲା । ନୂଆ ହୋଇ ସାଇକେଲ୍ ରିକ୍‌ସା ଚାଲୁଛି । ଲୋକେ ହାତଟଣା ରିକ୍‌ସାରେ ଯିବାକୁ ଆଉ ରାଜି ହେଉ ନାହାନ୍ତି । ଚାରିଣା ଜାଗାରେ ଆଠଣା ଦଶଣା ଦେଇ ମଧ୍ୟ ସାଇକେଲ୍ ରିକ୍‌ସାରେ ଯିବାକୁ ଚାହୁଁଛନ୍ତି । ଚୁଇଁ ବେହେରା ପହିଲେ ପହିଲେ ବେଶ୍ ଦି'ପଇସା ରୋଜଗାର କଲା; କିନ୍ତୁ ହିସାବ କଲାବେଳକୁ ଚୁଇଁ ଦେଖେ ଯେ, ଆୟ ବ୍ୟୟ ସମାନ । କାରଣ ଏ ମଧ୍ୟରେ ପୃଥିବୀବ୍ୟାପୀ ଲଢ଼େଇ ଆରମ୍ଭ ହୋଇଗଲା । ଧାନ ଚାଉଳର ଭାଉ ହୁ ହୁ ବଢ଼ିଗଲା । ହାତଟଣା ରିକ୍‌ସା ଟାଣୁଥିବା

ବେଳେ ଚୁଇଁଆ ଟଙ୍କାଟିଏ ଦେଲେ ଗ୍ଯରସେର ଗୁଡ଼ଳ ପାଉଥିଲା; କିନ୍ତୁ ଏବେ ସାଇକେଲ୍ ରିକ୍ସା ଚଳାଇଲା ପରେ ଗୁଡ଼ଳ ଭାଉ ବଢିଯାଇ ଟଙ୍କାରେ ହେଲା ମୋଟେ ଦୁଇସେର । ଫଳରେ ଚୁଇଁଆ ଦି'ଟଙ୍କା ଜାଗାରେ ଗ୍ଯରି ଟଙ୍କା ଦିନକୁ ରୋଜଗାର କରି ସୁଦ୍ଧା କିଛି ବଳକା ରଖିପାରିଲା ନାହିଁ । ଖାଲି ସେତିକି ନୁହେଁ । ବେଳକୁ ବେଳ ଚୁଇଁଆର ବଅସ ବଢ଼ିବା ସଙ୍ଗେ ସଙ୍ଗେ ବଳ ହଟି ହଟି ଆସିଲା । ତା'ପରେ ଦିନ ରାତି ସାଇକେଲ ରିକ୍ସାକୁ ପେଲି ପେଲି ଗୋଡ଼ ପେଣ୍ଡୁ। ଦି'ଟାରେ ଶିରାଗୁଡ଼ାକ ଫୁଲି ଉଠି କେଞ୍ଚୁଡ଼ି ପଡ଼ିଗଲା । ଖରା, କାକର, ବର୍ଷାରେ ରିକ୍ସା ବାହି ବାହି ଆଣ୍ଠୁଗଣ୍ଠିଆ ବାତ ବି ଧରିଲା । ଅଣ୍ଟା ଦରଜ ହେଲା । ସେଥିପାଇଁ ଚୁଇଁଆ ପ୍ରଥମେ ଟିକିଏ ଟିକିଏ ଅଫିମ ଖାଇବାକୁ ଆରମ୍ଭ କଲା । ସେତେବେଳକୁ ଦୈବଦୁର୍ଯୋଗକୁ ଅଫିମଖିଆ ବନ୍ଦ କରିବା ପାଇଁ ସରକାରଙ୍କ ପକ୍ଷରୁ କେତେ କଟକଣା ଜାରିହେଲା; କିନ୍ତୁ ଅଫିମ ନ ହେଲେ ଯେ ଚୁଇଁଆର ନ ଚଳେ । ସେଥିପାଇଁ ସେ କଳାପୋତେଇ ଦେଇ ଅଫିମ ଭେଣ୍ଡର ପାଖରୁ ଗ୍ଯରଣାର ଜିନିସକୁ ଆଠଣା ଦେଇ କିଣିବାକୁ ଲାଗିଲା । ଫଳରେ ଚୁଇଁଆର ହାତଟଣା ରିକ୍ସା ଟାଣିବା ବେଳର ରଙ୍ଗୀନ ସ୍ୱପ୍ନମାନ ମନ ମଧ୍ୟରେ ମିଳାଇ ଯିବାକୁ ଲାଗିଲା ।

ଖାଲି ସେତିକି ନୁହେଁ । କଥାରେ କହନ୍ତି, ଦୁର୍ଯୋଗ ଯେତେବେଳେ ଆସେ ନଈବଢ଼ିପରି ମାଡ଼ି ମାଡ଼ି ଯାଏ । କଟକ ସହରରେ ସାଇକେଲ୍ ରିକ୍ସା ସଂଖ୍ୟା ଏତେ ବଢ଼ି ବଢ଼ି ଗଲା ଯେ, ପ୍ରତି ଛକ ମୁଣ୍ଡରେ ଶହ ଶହ ରିକ୍ସା ଯାତ୍ରୀଙ୍କ ପାଇଁ ଅପେକ୍ଷା କରି ପଡ଼ି ରହିଲେ । ଫଳରେ ସାଇକେଲ ରିକ୍ସାର ଭଡ଼ା ବହୁତ

କମିଗଲା; ତଥାପି ଚୁଇଁ ବେହେରାର ସାହସ କମି ନ ଥାଏ । ସେ କଷ୍ଟେମଷ୍ଟେ ତା ସଂସାରଟା ଚଳାଉ ଥାଏ ।

ଏତିକବେଳେ ଦକ୍ଷିଣରୁ ଶହ ଶହ ସଂଖ୍ୟାରେ ରିକ୍‌ସାଚାଳୀ କଟକ ସହରରେ ଆସି ପହଞ୍ଚିଗଲେ । ଏଇ ରିକ୍‌ସାବାଲାଗୁଡ଼ାକ ଖୁବ ଶସ୍ତାରେ ରିକ୍‌ସା ଚଳାଇବାକୁ ରାଜି ହୋଇଗଲେ; କାରଣ ତାଙ୍କର ଖର୍ଚ୍ଚ କମ୍ । ସକାଳେ ଚାରି ପଇସାର ଇଡ଼ିଲି (ଏଣ୍ଡୁରିପିଠା) ଆଉ ଟିକିଏ ଚଟଣୀ ହେଲେ ହେଲା । ଦି'ବେଳା ମୁଠାଏ ଭାତ, ଟିକିଏ ମାଣ୍ଡିଆ ଜାଉ, ଆଉ ଚାରୁପାଣି ଟିକିଏ ହେଲେ ତାଙ୍କର ଚଳିଯାଏ । ଏଇ ଦକ୍ଷିଣିଆ ରିକ୍‌ସାବାଲାଗୁଡ଼ାକ ଝୁଣ୍ଟୁ ଝୁଣ୍ଟୁ ପଙ୍ଗପାଳ ପରି ମାଡ଼ିଆସିଲେ । କଟକ ସହରରେ ଯେତେ ରିକ୍‌ସା ଚାଲେ, ସେଥିରୁ ପ୍ରାୟ ତିନିପା ରିକ୍‌ସା ଏହି ଦକ୍ଷିଣିଆ ରିକ୍‌ସାଚାଳୀ ଚଳାନ୍ତି । ଫଳରେ ଚୁଇଁ ବେହେରା ପରି ବହୁ ପୁରୁଣା ସ୍ଥାନୀୟ ରିକ୍‌ସାବାଲାମାନଙ୍କର ଆୟ ବହୁତ କମି ଆସିଲା ।

ଖାଲି ସେତିକି ନୁହେଁ, କଟକ ସହରର ରିକ୍‌ସା ଚଳାଳିମାନେ ବି ଏହି ଦକ୍ଷିଣିଆ ରିକ୍‌ସାବାଲାମାନଙ୍କୁ ବେଶି ପ୍ରଶ୍ରୟ ଦେବାକୁ ଲାଗିଲେ । କାରଣ ତାଙ୍କର ବ୍ୟବହାର ଭଲ । ଅଳ୍ପ ପଇସାରେ ସନ୍ତୁଷ୍ଟ ହୋଇଯାନ୍ତି । ସେଥିପାଇଁ ରାସ୍ତାକଡ଼ରେ ଯେତେଗୁଡ଼ିଏ ଖାଲି ରିକ୍‌ସା ଠିଆ ହୋଇଥାଏ, ସେଥିମଧ୍ୟରୁ ରିକ୍‌ସା ଚଢ଼ାଳି-ମାନେ ପହିଲେ ଦକ୍ଷିଣିଆ ରିକ୍‌ସାବାଲାଙ୍କୁ ବାଛି ନିଅନ୍ତି । ଫଳରେ ବିଚରା ଆଦତ୍ ସ୍ଥାନୀୟ ରିକ୍‌ସାବାଲା ମଜୁରି ପାଏ ନାହିଁ । ଭୋକ ଉପାସରେ ଦିନ କାଟେ ।

ପୁରୁଣା ରିକ୍‌ସାବାଲାଙ୍କ ଏ ଦୁର୍ଦ୍ଦଶା ଦେଖି ଦଳେ ଭାବପ୍ରବଣ ସ୍ଥାନୀୟ ଲୋକେ ଚିତ୍କାର କରିବାକୁ ଆରମ୍ଭ

କରିଦେଲେ, ଏଇ ବିଦେଶୀ ରିକ୍‌ସାବାଲାଙ୍କୁ ତଡ଼ି ଦିଆଯାଉ । ଖବରକାଗଜରେ କେତେ ଲେଖା ବାହାରିଲା । ଏଇ ଆନ୍ଦୋଳନକାରୀମାନଙ୍କର ଅଗ୍ରଣୀ ହୋଇ ବାହାରିଲେ ଜଣେ ଯୁବକ ରାଜନୈତିକ ନେତା ଶ୍ରୀମାନ୍ ଜଗନ୍ନାଥ ଦଳବେହେରା । ସେ ସ୍ଥାନୀୟ ରିକ୍‌ସାବାଲାମାନଙ୍କୁ ମତାଇ ଧର୍ମଘଟ ମଧ୍ୟ ଆରମ୍ଭ କରିଦେଲେ; କିନ୍ତୁ ଧର୍ମଘଟର ଫଳ ହେଲା ଠିକ୍ ଓଲଟା । କାରଣ ଅଧିକାଂଶ ସ୍ଥାନୀୟ ରିକ୍‌ସାବାଲା ରିକ୍‌ସାଟଣା ବନ୍ଦ କରିଦେବାରୁ ରିକ୍‌ସା ମାଲିକମାନେ ତାଙ୍କ ସ୍ଥାନରେ ଦକ୍ଷିଣିଆ ରିକ୍‌ସାଟଣାଳୀଙ୍କୁ ନିଯୁକ୍ତ କରିଦେଲେ । ଫଳରେ ଧର୍ମଘଟ ତ ସଫଳ ହେଲାନାହିଁ; ବରଂ ଅଧିକାଂଶ ସ୍ଥାନୀୟ ରିକ୍‌ସାଟଣାଳୀ ତାଙ୍କ ଜୀବିକା ହରାଇ ବସିଲେ । ଖବରକାଗଜ ଲେଖାଲେଖିରେ ମଧ୍ୟ ଫଳ କିଛି ହେଲା ନାହିଁ । କାରଣ ସରକାରଙ୍କର ଏପରି କୌଣସି ଆଇନ ନ ଥିଲା, ଯାହା ବଳରେ କି ସେ ଦକ୍ଷିଣରୁ ଆସୁଥିବା ରିକ୍‌ସା ଟଣାଳିମାନଙ୍କୁ ବନ୍ଦ କରିଦେଇ ପାରିବେ । ଶେଷରେ ଶ୍ରୀମାନ୍ ଦଳବେହେରା କଟକ ସହରରେ ସଭାସମିତି କରି ବକ୍ତୃତା ଦେବାକୁ ଆରମ୍ଭ କରିଦେଲେ; କିନ୍ତୁ ତାଙ୍କ ବକ୍ତୃତା ଶୁଣିବାକୁ କେହି ଆସିଲେ ନାହିଁ । ଦିନେ ଏପରି ଏକ ସଭାରୁ ଘରକୁ ଫେରିବାବେଳେ ଶ୍ରୀମାନ୍ ଦଳବେହେରା ରାସ୍ତାକଡ଼ରେ ଛିଡ଼ା ହୋଇଥିବା କେତେଗୁଡ଼ିଏ ରିକ୍‌ସା ଦେଖି ଗୋଟିଏ ରିକ୍‌ସା ଭଡ଼ା କରିବାକୁ ଚାହିଁଲେ । ପଙ୍ଗପାଳଦଳ ଭଳି ରିକ୍‌ସାବାଲାଗୁଡ଼ାକ ଆସି ତାଙ୍କୁ ଘେରିଗଲେ । ଶ୍ରୀମାନ୍ ଦଳବେହେରା ପଚାରିଲେ, ଚୁଡ଼ିଆଗଞ୍ଜକୁ କେତେ ନେବ । ଜଣେ ସ୍ଥାନୀୟ ରିକ୍‌ସାବାଲା ପାଖେଇ ଆସି କହିଲା—"ଆଜ୍ଞା ଆଠଅଣାଠାରୁ କମ୍ ହେବନାହିଁ ।" ତା ପଛକୁ ଆଉ ଜଣେ ଦକ୍ଷିଣିଆ ରିକ୍‌ସାବାଲା ଠେଲି ପେଲି

ଆସି କହିଲା, "ବାବୁ ଗାରୁ, ଆରୁ ଆନାଲୁମେ ଲେ ଯାଏଁ ଗେ ।" ଅର୍ଥାତ୍ ଛଅ ଅଣାରେ ମୁଁ ନେଇଯିବି । ଶ୍ରୀମାନ ଦଳବେହେରାଙ୍କ ପାଟିରୁ ସଙ୍ଗେ ସଙ୍ଗେ ବାହାରି ପଡ଼ିଲା—'ଆଚ୍ଛା ଆଓ, ତୁମ୍ ଲେ ଚଲ୍ ।' ତାପରେ ଶ୍ରୀମାନ ଦଳବେହେରା ଦକ୍ଷିଣିଆ ରିକ୍ସାବାଲାର ରିକ୍ସାରେ ବସି ଚାଲିଲେ ଘରମୁହାଁ ।

ତାର କେତୁଦିନ ପରେ । ଶ୍ରୀମାନ୍ ଦଳବେହେରା ଗୋଟିଏ ଦକ୍ଷିଣିଆ ରିକ୍ସାବାଲାର ରିକ୍ସାରେ ବସି କଟକଚଣ୍ଡୀ ଦର୍ଶନରେ ଆସିଲେ । ଚଣ୍ଡୀମନ୍ଦିର ଦୁଆରମୁହଁରେ ପଶିଗଲାବେଳେ ଦେଖିଲେ, ଧାଡ଼ି ଧାଡ଼ି ହୋଇ ବସିଛନ୍ତି ଦଳେ ଭିକାରି । ତା'ରି ଭିତରୁ ଅସ୍ଥିଚର୍ମସାର ଜଣେ ଭିକାରି ଆଗକୁ ଆସି ହାତରେ ଧରିଥିବା ଟିଣ ଡବାଟିରେ ଦଳବେହେରା ବାବୁଙ୍କ ମୁଣ୍ଡରେ ଖୁବ୍ ଜୋର୍‌ରେ ଆଘାତ କଲା । ଦଳବେହେରା ବାବୁଙ୍କର ମୁଣ୍ଡ ଫାଟି ରକ୍ତ ବୋହିଲା । ସେ ଚିତ୍କାର କରି ଉଠିଲେ—ପୋଲିସ୍ ପୋଲିସ୍, ଏ ଶାଲା ଭିକାରି ହାମକୁ ମାରି ଡାଲା, ଇସ୍‌କୋ ପକ୍‌ଡ଼ୋ ପକ୍‌ଡ଼ୋ । କଟକଚଣ୍ଡୀ ଛକରେ ଛିଡ଼ା ହୋଇଥିବା ପୋଲିସ୍ କନେଷ୍ଟବଳ ସଙ୍ଗେ ସଙ୍ଗେ ଧାଇଁ ଆସି ସେଇ ଭିକାରିଟାକୁ ଧରି ପକାଇ କହିଲେ—"କ୍ୟା ଶାଲା, ତୁମ୍ କିଆ ପାଗଲ ହୋ, ଏ ବାବୁ-ଲୋକକୁ ମାରି ଡାଲା ?" ସେଇ ଅସ୍ଥିଚର୍ମସାର ଭିକାରିଟି ପାଗଳଙ୍କ ପରି ଅଟ୍ଟହାସ କରି କହିଲା—"ମୁଁ ପାଗଳ ନୁହେଁ, ପାଗଳ ଏଇ ସବୁ ବାବୁଭୟା, ଯେଉଁମାନେ ଆମକୁ ଆଜି ବାଟରେ ଭିକାରି କରି ଦେଇଛନ୍ତି ।" ଦଳବେହେରାଙ୍କ ପାଖକୁ ଆଉ ଟିକିଏ ପାଖେଇ ଯାଇ ସେ କହିଲା—"ବାବୁ ମୋତେ ଚିହ୍ନୁଛ ? ମୁଁ ସେଇ ଚୁଇଁ ବେହେରା । ତୁମର ମନେ ନାହିଁ, ମୋତେ ତୁମେ ମତେଇ କହିଥିଲ

ଧର୍ମଘଟ କର—ରିକ୍‌ସାଟଣା ବନ୍ଦ କରିଦିଅ, ଦେଖିବ କେମିତି ଦୁନିଆ ଅଚଳ ହୋଇଯିବ ଆଉ ସରକାର ମଧ୍ୟ ବାଧ୍ୟ ହୋଇ ଏଇ ଦକ୍ଷିଣିଆଗୁଡ଼ାଙ୍କୁ ତଡ଼ିଦେବେ । ତମ କଥା ମାନି ମୁଁ ମାଲିକଙ୍କ ରିକ୍‌ସାଟଣା ବନ୍ଦ କରିଦେଲି । ଫଳରେ ତା'ପର ଦିନ ଜଣେ ଦକ୍ଷିଣିଆ ମୋ ଜାଗା ଦଖଲ କରିନେଲା । ତାପରେ ମୁଁ ହେଲି ଭିକାରି—ବାଟର ଭିକାରି । ପେଟକୁ ଦାନା ନାହିଁ—ପିଠିକୁ କନା ନାହିଁ"— । ତାପରେ ପୋଲିସ୍‌କୁ ଚାହିଁ କହିଲା—"ଆଜ୍ଞା, ମୋତେ କ'ଣ ଧରୁଛନ୍ତି, ଧରିବେ ତ ଧରନ୍ତୁ ଏଇ ସବୁ ଧୋବଲା ଠକଙ୍କୁ, ଯେ ସବୁ ନିଜର ସ୍ୱାର୍ଥପାଇଁ ଆମଭଳି ନିରୀହ ଲୋକଙ୍କୁ ବଳି ଦେଇ ବାହାବା ନିଅନ୍ତି ।" କିନ୍ତୁ ପୋଲିସ୍ ଚୁଇଁ ବେହେରାର ଯୁକ୍ତି ଶୁଣିବାକୁ ନାରାଜ । କାରଣ ସେଟା ଗୋଟେ ଭିକାରି, ଆଉ ଶ୍ରୀମାନ୍ ଦଳବେହେରା ଜଣେ ଦେଶପୂଜ୍ୟ ନେତା, ହୁଏତ ଆସନ୍ତା ନିର୍ବାଚନରେ ସେ ଲୋକପ୍ରତିନିଧିଭାବେ ନିର୍ବାଚିତ ହୋଇ ମନ୍ତ୍ରୀ-ଗାଦିରେ ବସିପାରନ୍ତି । ସେଥିପାଇଁ ପୋଲିସ୍ ଚୁଇଁ ବେହେରାକୁ ଦଉଡ଼ିରେ ବାନ୍ଧି ବଡ଼ ରାସ୍ତାରେ ଥାନା ହାଜତକୁ ନେଇଗଲା । ବେହେରା ମୁହଁରୁ ବାହାରୁ ଥାଏ, ସେହିପରି ଠୋ ଠୋ ହସ ଆଉ ସ୍ୱେ କହୁଥାଏ 'ହେ, ମୁଁ ପାଗଳା ନା ଏ ଦୁନିଆ ଯାକର ସମସ୍ତେ ପାଗଳା ।'

———

# ନିଶୀଥର ପ୍ରେତାତ୍ମା

## ଅଧ୍ୟାପକ ଶ୍ରୀ ପ୍ରାଣବନ୍ଧୁ କର

ଗୋଟିଏ ଛୋଟିଆ ଜୀବନର ଛୋଟିଆ ଇତିହାସ--ଭାରତର ଗଣତନ୍ତ୍ର ଶାସନର ଦ୍ୱିତୀୟ ସାଧାରଣ ନିର୍ବାଚନ ପାଇଁ ଛ'ଟି କେନ୍ଦ୍ରରେ ଭୋଟ ଗ୍ରହଣ କାର୍ଯ୍ୟ ଶେଷ କରି ପ୍ରିଜାଇଡ଼ିଂ ଅଫିସର ବିଶ୍ୱବନ୍ଧୁ କଟକ ଫେରୁଚି ଇଲେକ୍‌ସନ ଟ୍ରକ୍‌ରେ । ପ୍ରଥମ ସାଧାରଣ ନିର୍ବାଚନରେ ସେ ବସ୍‌ରେ ଯାଇଥିଲି ଆଉ ଫେରିଥିଲି; କିନ୍ତୁ ଏଥର ଫାଲ୍ଗୁନ ମାସେ କାଳ ଖରାରେ ତତିରେ ଖାଲ ଢିପ ରାସ୍ତାରେ ଧକଡ଼ ଚକଡ଼ ହୋଇ ମାଲବୁହା ଟ୍ରକ୍‌ରେ ପୋଲିଂ ପାର୍ଟି ସହିତ ବିଶ୍ୱବନ୍ଧୁ ଫେରୁଚି ଶ୍ରାନ୍ତ କ୍ଳାନ୍ତ ହୋଇ । ସାଥିରେ ସେ ପ୍ରଥମ କରି ରକ୍ତଆମାଶୟ ରୋଗ ଧରି ଫେରୁଚି—ତା ପାଇଁ ଟ୍ରକ୍‌ଟା ବାଟରେ ପାଣିଥିବା ଜାଗା ଦେଖି ପ୍ରାୟ ପନ୍ଦର ଥର ଅଟକିଲାଣି । ରାତି ଦୁଇଟା—ଜହ୍ନ ଆଲୁଅ ରାସ୍ତାକଡ଼ର ବିପଟ ଗମ୍ଭୀର ବଣରେ ବନ୍ଦୀ ହୋଇ ଯାଇଚି—ବିଶ୍ୱବନ୍ଧୁ ବସିଚି ଡ୍ରାଇଭର ପାଖେ, ଆଉ ତା ପୋଲିଂ ପାର୍ଟିର ଅନ୍ୟାନ୍ୟ ସଭ୍ୟମାନେ ଟ୍ରକ୍‌ର ଗୁଙ୍ଗଡ଼ା ଭିତରେ ବିକ୍ଷିପ୍ତଭାବରେ ରଖାହୋଇଥିବା ମାଲପତ୍ର ଭିତରେ କୌଣସି ପ୍ରକାରେ ଖୁନ୍ଦାଖାନ୍ଦି ହୋଇ ବସିଛନ୍ତି । ଟ୍ରକ୍ ହଠାତ୍ ଖାଲରେ ପଡ଼ି ଉଠିଗଲା ବେଳକୁ ସେମାନଙ୍କ ଶରୀରଗୁଡ଼ିକ ଟ୍ରକ୍ ଚଟାଣ ଦେହରୁ ହାତେ ଉପରକୁ ଉଠିଯାଇ ପୁଣି ଯଥା ସ୍ଥାନକୁ ଫେରିଗଲାବେଳେ ତାଙ୍କର ମୁହଁରେ ଯେଉଁ ବିକଳ ଭାବ ଫୁଟିଉଠୁଚି, ତାହା ଇଲେକ୍‌ସନ୍ କର୍ମକର୍ତ୍ତାଙ୍କ ଆଖିରେ ପଡ଼ିପାରୁନି ବୋଲି ବିଶ୍ୱବନ୍ଧୁଙ୍କ ମନରେ ଦାରୁଣ କ୍ଷୋଭ । ପୋଲିଂ କର୍ମଚାରୀମାନଙ୍କୁ ଖରା ଦାଉରୁ ରକ୍ଷା କରିବା ପାଇଁ ବଡା ଫେ୍ରମ ଉପରେ ଗୋଟିଏ ତାରପୁଲିନ୍

ତାଙ୍କି ହୋଇଯାଇଛି । ଇଲେକ୍‌ସନ୍ କାମରେ ଶୁଭଯାତ୍ରା ସୂଚନା ଦେବା ପାଇଁ ଯେତେବେଳେ ଖୋଲା ଟ୍ରକ୍ ଉପରେ ଏଇ ଚାର୍‌ପୁଲନ୍ ଗ୍ରୁପ ତିଆରି କାମ ଚାଲିଥିଲା, ସେତେବେଳେ କୌତୂହଳ ଦୃଷ୍ଟିରେ ବସ୍ତିର ପାଟଳା ଦାଢ଼ିଆ ବସିର୍ ମିଆଁଠାରୁ ଆରମ୍ଭ କରି ଗୁରୁବର୍ଷିଆ ଛୁଆ ପର୍ଯ୍ୟନ୍ତ ସମସ୍ତେ ଟ୍ରକ୍ ଚାରିପଟେ ଜମା ହୋଇ ଯାଇଥିଲେ । ବସ୍ତିବାଲାଙ୍କର ଆଗ୍ରହ ଦୃଷ୍ଟି ଟ୍ରକ୍‌ର ଏଇ ଆକସ୍ମିକ ଓ କ୍ଷଣସ୍ଥାୟୀ ପଦୋନ୍ନତି ପ୍ରତି ଏକ କଟାକ୍ଷ ଭାବି ଶିଖ ଡ୍ରାଇଭର ଅଜିତ୍ ସିଂ କପରି ଗୋଟାଏ ଅସ୍ୱସ୍ତି ଅନୁଭବ କରୁଥିଲା; ସୁତରାଂ ବସ୍ତିବାଲାଙ୍କ ଭିଡ଼ ବଢ଼ିବାରୁ ସେ ସେମାନଙ୍କୁ ଘଉଡ଼େଇବାକୁ ଚେଷ୍ଟା କଲା; କିନ୍ତୁ କଟକୀ ବସ୍ତିର ଛୁଆ ସେମାନେ, ସହଜରେ ହାଲ ଛାଡ଼ନ୍ତି ନାହିଁ ।

ବିଶ୍ୱବନ୍ଧୁର ସ୍ତ୍ରୀ ଅଞ୍ଜଳି ଝରକା ପାଖରେ ଠିଆହୋଇ ଟ୍ରକ୍‌ର ଏ ସୌଭାଗ୍ୟ ଲକ୍ଷ କରୁଥିଲେ ମୁରୁକିହସା ଦେଇ—ବିଶ୍ୱବନ୍ଧୁ ତା ଦେଖିପାରି କହିଲା—"ଏଇ ଟ୍ରକ୍‌ରେ ଆମେ ବୁଢ଼ା ହୋଇ ଯିବୁ ଶହ ଶହ ମାଇଲ୍—ଛ ଛ'ଟା ବୁଥ୍‌ରେ କାମ କରିବୁ—"

"—ମନ୍ଦ କଅଣ ? ଇଟା କାଠ ବଦଳରେ ତମେମାନେ ବୁଢ଼ାହୋଇ ଯିବ ।" ଅଞ୍ଜଳି ପରିହାସ ଭଙ୍ଗୀରେ କହିଲା ।

"ମୁଁ ଭାବିପାରୁନି ଗଭର୍ଣ୍ମେଣ୍ଟ ଅଫିସର ଆମକୁ ସବୁ ଇଟା କାଠ ସଙ୍ଗେ ସାମିଲ୍ କଲେ କମିତି !"

ଅଞ୍ଜଳି କହିଲା –"କାହିଁକି ଭାବି ପାରିଲନି ? ଭୋଟ କାମଟା କଅଣ ଦେଶ କାମ ନୁହେଁ ? ସେଥିପାଇଁ ସ୍ୱାର୍ଥ ଓ ସୁଖ ସ୍ୱାଚ୍ଛନ୍ଦ୍ୟ ତ୍ୟାଗ କରିବାକୁ ପଡ଼ିବ—"

ଅଞ୍ଜଳିର ଏପରି ଏକ ମନ୍ତବ୍ୟ ବିଶ୍ୱବନ୍ଧୁ ଆଶା କରି ନ ଥିଲା—ବ୍ୟଥିତ ହୋଇ କହିଲା—"ଲାଭ ?"

"ଲାଭ ନାହିଁ କହୁଚ ? ବେଶ୍ ଲାଭଅଛି—ଦେଖୁନ ଯେଉଁମାନେ ବ୍ରିଟିଶ ସରକାରଙ୍କ ଅମଳରେ ଦେଶର କଂଗ୍ରେସ ନେତାମାନଙ୍କୁ ଜେଲରେ ଠୁଁକି ଦେଇ ଗୋରାସାହେବମାନଙ୍କଠୁ ବାହାବା ପାଉଥିଲେ, ସେମାନେ ଏବେ ରାଜଦତ୍ତ ଉପାଧି ଗୁଡ଼ିକ ଛାଡ଼ି ଦେଇ ଖଦଡ଼ ପିନ୍ଧି କାର୍ ଚଢ଼ି ବୁଲିବାରୁ ତାଙ୍କୁ ନେତୃତ୍ୱ ଦେବାପାଇଁ ଦେଶଲୋକେ କିମିତି ବ୍ୟାକୁଳ—ଦେଖୁନ ସେମାନଙ୍କର ମହାମାୟୁ ସ୍ୱାର୍ଥତ୍ୟାଗ ଦେଶବାସୀଙ୍କୁ କିମିତି ମୁଗ୍ଧ କରିଚି—"

"ମୋର ତେବେ ସେମିତି କିଛି ଲାଭ୍ ହବ ବୋଲି ଭାବୁଚ ଅଞ୍ଜଳି ?"

"ସେ ଧରଣର ଲାଭ ନ ହୋଇ ପାରେ—ତେବେ ଇଲେକ୍‌ସନ୍‌ରୁ ଫେରି ଆସିଲେ ଅନ୍ତତଃ ଆମାଶୟ, ଇନ୍‌ଫ୍ଲୁଏଞ୍ଜା କିମ୍ବା ଟାଇଫଏଡ଼୍ ଲାଭ ହବ ତ ?"

ବିଶ୍ୱବନ୍ଧୁ ଅଞ୍ଜଳିର ବିଚକ୍ଷଣତାରେ ମୁଗ୍ଧ ହୋଇଯାଇ କହିଲା, "ଅଞ୍ଜଳି, ବି.ଏ. ପାଶ ପରେ ମତେ ବାହା ନ ହୋଇ ତମେ ରାଜନୀତି କରିଥିଲେ ଏତେବେଳେ ମନ୍ତ୍ରୀ ହୋଇ ସାରନ୍ତଣି ।"

ଅଞ୍ଜଳି ଫିସ୍‌କରି ହସିପକେଇ କହିଲା—"ଭୁଲ୍ କରିପକେଇ ଥିଲି । ସେତେବେଳେ ଭାବିଲି, ମନ୍ତ୍ରିତ୍ୱ ପାଇବା ସହଜ; କିନ୍ତୁ ତମକୁ ପାଇବା ସହଜ ନୁହେଁ—"

ବିଶ୍ୱବନ୍ଧୁ କହିଲା—"ବର୍ତ୍ତମାନ ବି ତ ସେ ଭୁଲଟା ଠିକ୍ କରି ନେଇ ପାରିବ—ତମର ବୁଦ୍ଧି ଅଛି, ବିବାହର ଷୋଳ ବର୍ଷ ପରେ ମଧ୍ୟ ସୌନ୍ଦର୍ଯ୍ୟ ମରିନି ଧରିନ—"

ଅଞ୍ଜଳି ବିଶ୍ୱବନ୍ଧୁର କଥାଟାକୁ ଗ୍ରହଣ କରିନେଲା ଭଳି ଭାବ- ଦେଖେଇ କହିଲା—"ମନ୍ଦ ହୁଅନ୍ତା ନାହିଁ । ରାଣୀ ଏଲିଜାବେଥ୍ କୌଣସି ଉତ୍ସବରେ ଯୋଗ ଦେଲାବେଳେ ଡିଉକ ଅଫ୍ ଏଡ଼ିନ୍‌ବର୍ଗ ଯେମିତି ତାଙ୍କ ପଛେ ପଛେ ଚାଲିଥାନ୍ତି ଓ ତାଙ୍କ ପଛରେ ତାଙ୍କ ପିଲାମାନେ, ମୁଁ ସଭାସମିତି ବା ଉତ୍ସବରେ ଯୋଗଦେଲାବେଳେ ମୋ ପଛେ ପଛେ ଝୁଅମାନଙ୍କୁ ଧରି ତମେ ବି ଚାଲିଥାନ୍ତ—କିମ୍ବା ମୁଁ ଯଦି ତମ ଡିପାର୍ଟ୍‌ମେଣ୍ଟର ମନ୍ତ୍ରୀ ହୁଅନ୍ତି, ତେବେ ମତେ ଦିନରାତି ଦଣ୍ଡବତ କରୁଥାନ୍ତ—"

ବିଶ୍ୱବନ୍ଧୁ ହସି କହିଲା—"କିନ୍ତୁ ମାଡ଼ାମ୍, ଦି ଡର୍ ହ୍ୟାଜ୍ ହିଜ୍ ଡ଼େ ଅଲ୍ ସୋ । ଘରକୁ ଫେରିଆସିଲା ପରେ ପ୍ରିନ୍ସ ଆଲବର୍ଟ ରାଣୀ ଭିକ୍ଟୋରିଆଙ୍କୁ ଦଣ୍ଡେଇଲାଭଳି ମୁଁ ବି ତମକୁ ଦଣ୍ଡେଇ ଦିଅନ୍ତି, ବୁଝିଲ ?"

ଅଞ୍ଜଳି ଓଠ ବଙ୍କେଇ କହିଲା, 'ଇସ୍‌······ଷ୍ଟୁକଣ୍ଟ ଭୟ ନାହିଁ ? ସଙ୍ଗେ ସଙ୍ଗେ ଅଫିସକୁ ଯାଇ ବରଖାସ୍ତ ଅର୍ଡ଼ର ।"

"ହଁ ହଁ, ଭାରି ବରଖାସ୍ତ କଲାବାଲା । ପାଞ୍ଚବର୍ଷ ପରେ ଯେତେବେଳେ ଆସେମ୍ବ୍ଲିକୁ ନିର୍ବାଚିତ ନ ହୋଇପାରନ୍ତ, ସେତେ- ବେଳେ ତମ ମଜାଟା ବାହାରି ଯାଆନ୍ତା ।"

ସ୍ୱାମୀ ସ୍ତ୍ରୀଙ୍କର ଏଇ ମଧୁରାଳାପରେ ବାଧାଦେଇ ଡ୍ରାଇଭର ଆସି କହିଲା, "ଜି, ହୋଗିଆ ।"

ବିଶ୍ୱବନ୍ଧୁ ଦେଖିଲା ଟ୍ରକର ରୂପ ବଦଳିଯାଇଛି । ଟ୍ରକର ଗୁଙ୍ଗଡ଼ା ଉପରେ ଟାର୍‌ପୁଲିନ୍‌ଟା ପଡ଼ିଗଲା ପରେ ଗୁଡ଼ାଟା ଶଗଡ଼ ଗାଡ଼ିର ଗୋଲିଆ ତାଳପତ୍ର ବା ତଲେଇ ଛାତ ଭଳି ଦେଖାଯାଉଛି;

କିନ୍ତୁ ଶଗଡ଼ ନୁହେଁ କି ବସ୍ ନୁହେଁ, ପଶୁ ନୁହେଁ କି ପକ୍ଷୀ ନୁହେଁ । ଡ୍ରାଇଭର ଟ୍ରକର ପଛପଟେ, କଡ଼ରେ ଓ ସାମନାରେ ଛପା ଅକ୍ଷରରେ ଇଂରାଜୀରେ ଲେଖା ହୋଇଥିବା "ଅନ୍ ଇଲେକ୍‌ସନ ଡିଉଟି" ଓ "ପାର୍ଟି ନମ୍ବର ୫୦୦" କାଗଜଗୁଡ଼ିକ ମାରିଦେଇ ଟ୍ରକର ମାନ ସମ୍ମାନ ବଢ଼ାଇବାରେ ଯଥେଷ୍ଟ କୋସିସ୍ କରିଚି···!

ଆଜି ସେଇ ଟ୍ରକ୍‌ଟି ଜହ୍ନ ରାତିରେ ଫେରୁଚି···ପୋଲିଂ କର୍ମଚାରୀ ଓ ଟ୍ରକର ଗଲାବେଳର ସତେଜତା ଫେରିଲାବେଳକୁ ନାହିଁ—ନୂଆ ମାଟିପକା ରାସ୍ତାରେ ମାଇଲ ମାଇଲ ପଡ଼ି ଉଠି ଯିବାଆସିବା ଫଳରେ ଟାରପୁଲିନ୍ ଗୁଡ଼ିକ ଗୋଟିଏ ଲେସଡ଼ା ଆମ୍ବଭଳି ଦେଖାଯାଉଚି···ଟ୍ରକ ଆସି ବଡଚଣା ପୁଲିସ ଷ୍ଟେସନ ସାମ୍ନାରେ ପହଞ୍ଚିଲା···ବିଶ୍ୱବନ୍ଧୁ ଦେଖିଲା, ଗୋଟିଏ ପଡ଼ିଆରେ ବହୁତ ଗୁଡ଼ିଏ ପେଟ୍ରୋମାକ୍ସ ଜଳୁଚି···ଦୋଳଯାତ୍ରା—ପୋଲିଂ ଅଫିସରମାନେ କହିଲେ—"ସାର୍, ଆମେ ଟିକିଏ ଯାତ୍ରା ଦେଖିବୁ ।"

ବିଶ୍ୱବନ୍ଧୁ ସାଙ୍ଗେ ସାଙ୍ଗେ ରାଜି ହୋଇଯାଇ ପଚାରିଲା, ଏଠି ପାଖରେ ପୋଖରୀ କିମ୍ବା ଗାଡ଼ିଆ ନ ଥିବ ?

ଟ୍ରକ୍ ରାସ୍ତାକଡରେ ରହିଲା—ପୋଲିଂ ଅଫିସର୍ ଓ ପୁଲିସ୍ ପାର୍ଟି ଯାତ ଦେଖି ବାହାରିଲେ—ଆଉ ପ୍ରିଜାଇଡ଼ିଂ ଅଫିସର ଜାମାପଟା ବାହାର କରି ବାହାରିଲେ ପଡ଼ିଆର ସନ୍ଧାନରେ—

ସାମାନ୍ୟ ସୁସ୍ଥ ବୋଧ କରି ବିଶ୍ୱବନ୍ଧୁ ଫେରିଆସିଲା ଟ୍ରକ ପାଖକୁ; କିନ୍ତୁ ଯାହା ଦେଖିଲା, ସେଥିରେ ସେ ବିସ୍ମିତ ହେଲା ।

ଟ୍ରକର ବାଁ ପଟ ପଛ ଓ ସାମନା ଚକ ମଝିରେ ଗୋଟିଏ ଲୋକ ବସିଚି···ବିଶ୍ୱବନ୍ଧୁ ଭାବି ପାରିଲାନାହିଁ କି ଉଦ୍ଦେଶ୍ୟରେ

ଗୋଟାଏ ଲୋକ ଟ୍ରକ୍ ତଳେ ବସିପାରେ । ଟ୍ରକ୍ ତଳ ଅନ୍ଧାର— ଲୋକଟିର ଦେହର ରଙ୍ଗ ମଧ କଳା—ତାର ଚିରିଣ୍ଡା ମଇଳା ଲୁଗାରୁ ଜାଣି ହବନା ଗୋଟାଏ ଲୋକ ଟ୍ରକ୍ ତଳେ ବସିଛି ବୋଲି···ସେଠି ଲୋକଟାର ଉପସ୍ଥିତି କେହି ଜାଣି ପାରି ନ ଥିଲେ ଟ୍ରକ୍ ଯେତେବେଳେ ଚାଲିବାକୁ ଆରମ୍ଭ କରିଥାନ୍ତା, ସେ ଲୋକଟି ଅବଶ୍ୟ ମରିଥାନ୍ତା···ତା'ପରେ ?···ତା ପରେ ଇନ୍‌କୁଆରୀ··· ଇଲେକ୍‌ସନ୍ ପାର୍ଟି ନଂ ୫୦୦ ଟ୍ରକ୍ ଗୋଟିଏ ଭିକାରୀ ଉପରେ ମାଡ଼ିଯାଇ ତାକୁ ମାରି ଦେଇଛି···କେହି ବୁଝି ପାରି ନ ଥାନ୍ତା ଅସଲ କଥା···ଡ୍ରାଇଭର ହତବାକ୍ ହୋଇ ଭାବିଥାନ୍ତା ଲୋକଟା ଉପରେ ସେ କେତେବେଳେ ଟ୍ରକ୍ ଚଢ଼େଇଦେଲା । ପ୍ରିଜାଇଡ଼ିଂ ଅଫିସର ବିଶ୍ୱବନ୍ଧୁ ମଧ ବିସ୍ମିତ ହୋଇ ଠିକ୍ ସେଇକଥା ହିଁ ଭାବନ୍ତା ।

ଉତ୍ୟକ୍ତ ଗଳାରେ ବିଶ୍ୱବନ୍ଧୁ ପଚାରିଲା—"କିଏ ବସିଛି ରେ ମଟର ତଳେ ?"

ଲୋକଟି ନିରୁତ୍ତର ରହିଲା । ବେକଟି ନୁଆଇଁ ଦେଇ ସେ ବସିରହିଲା ଏକ ଚିନ୍ତାଶୀଳ ଦାର୍ଶନିକ ଭଳି ।

ବିଶ୍ୱବନ୍ଧୁର ଗଳା ପଞ୍ଚମକୁ ଉଠିଲା···ତଥାପି ସେ ଲୋକଟି ବସି ରହିଲା ଧ୍ୟାନମଗ୍ନ ବୁଦ୍ଧଙ୍କ ଭଳି—

ସପ୍ତମକୁ ଉଠିଲା ବିଶ୍ୱବନ୍ଧୁର ଗଳା—
"କିରେ କିଏ ବସିଛି ସେଠି, ପାଟି ନାହିଁ ?"
କ୍ଷୀଣ ଅଥଚ ଦୃଢ଼ ଏକ ବୃଦ୍ଧ କଣ୍ଠରୁ ଉତ୍ତର ଆସିଲା—
"ମୁଁ ବସିଛି···।"
ନିର୍ଭୟ ନିଃସଙ୍କୋଚ ଗୋଟିଏ ଦି'ପଦିଆ ଉତ୍ତର—

"ତୁ ବୋଇଲେ କିଏ ?"

ବୃଦ୍ଧ ପୁଣି କହିଲା—"ଶୈର ତସ୍କର ନୁହେଁ ବାବୁ···ଆପଣ କାହିଁକି ଏମିତି ରାଗୁଚ ?"

ବିଶ୍ୱବନ୍ଧୁର ଚିତ୍କାରରେ ଗାଁର କେତେଗୁଡ଼ିଏ ଲୋକ ଆସି ଜମା ହୋଇଗଲେ···ଗୋଟିଏ ପିଲା କହିଲା—ଆରେ ହେ, ଏଇତ ଚଇଁ ଜେନା କୋଢ଼ିଆ ।"

"କାହିଁକି ସେ ଟ୍ରକ୍ ତଳେ ଯାଇ ବସିଚି ?" ବିଶ୍ୱବନ୍ଧୁ ସେଇ ପିଲାଟି ଆଡ଼େ ଚାହିଁ ପଚାରିଲା ।

"ମୁଁ କହି ପାରିବିନି —"

ଆଉ ଜଣେ ଗ୍ରାମବାସୀ କହିଲା –

"ଆଜ୍ଞା କୋଢ଼ିଆଟା ଘାର କଷ୍ଟ ପାଉଚି – ମୋଟରତଳେ ଜୀବନ ହାରିବାକୁ ବସିଚି ବୋଧେ । ବିଶ୍ୱବନ୍ଧୁ ଚଇଁଜେନାକୁ ଚାହିଁ କହିଲା--"ଏ, ଚାଲିଆ ସେଠୁଁ···"

ବିଶ୍ୱବନ୍ଧୁ ଅପେକ୍ଷା କଲା--କିନ୍ତୁ ଚଇଁ ଜେନା ଚଳିଲାନାହିଁ । ଜମା ହୋଇଥିବା ଲୋକମାନଙ୍କ ଭିତରୁ ଜଣେ ବୁଢ଼ା କହିଲା--

"କରେ ଚଇଁଆ, ଆସୁନୁ କିଆଁ··ବାବୁଙ୍କର ଡେରି ହେଉଚି, ମୋଟର ଛାଡ଼ିବେ ।"

"ଛାଡ଼ୁ ନାହାନ୍ତି ମୋଟର, ମୁଁ କଅଣ ତାଙ୍କୁ ମନା କଲି ?

"କେମିତି ଛାଡ଼ିବେ, ତୁ ତା ତଳେ ବଇଚୁ ମଟର ଅଖଟାକୁ ଜାବୁଡ଼ି ଧରି ।"

"ମୁଁ ଏଇ ଅଖ ଉପରେ ଟିକିଏ ବସି କରି ଚାଲିଯିବି--"

ରାଗିଯାଇ ବିଶ୍ୱବନ୍ଧୁ ପଚାରିଲା--"କୁଆଡ଼େ ଚାଲିଯିବୁ ?"

"ଛଡ଼ିଆ"

"ଅଖ ଉପରେ ବସିକରି ଗଲେ ପଡ଼ିବୁ—ମରିବୁ ।"

"ହଉ ବାବୁ, ମଲେ ମରିବା···ବଞ୍ଚି କରି କୋଉ ଲାଭ ହଉଚି ?"

ବିଶ୍ୱବନ୍ଧୁ ହତାଶ ଭାବରେ ଗ୍ରାମବାସୀମାନଙ୍କ ଆଡ଼େ ଚାହିଁ କହିଲି—"ବଡ଼ ମୁସ୍କିଲ କଥା ହେଲା···ଆମେ ଏବେ ଯିବୁ କିମିତି ? ଏ ବୁଢ଼ାର ଆଉ କିଏ ଅଛି ?"

ପୂର୍ବୋକ୍ତ ବୁଢା ଜଣକ କହିଲି—"ତା'ର ଆଉ କେହି ନାହିଁ – ପୁଅ ମରିଗଲା । ପରେ ତା ବୋହୂ ଆଉ ଜଣକୁ ଦୁଷ୍ଟାୟୁ ହୋଇ ଚାଲିଗଲା ।"

ବିଶ୍ୱବନ୍ଧୁ ପକେଟରୁ ଗୋଟିଏ ଆଠଣି ବାହାର କରି ଚଇଁ ଜେନାକୁ ଯାଚିଲା—କିନ୍ତୁ ସେଥିପ୍ରତି ଭ୍ରୂକ୍ଷେପ ନ କରି ସେ କହିଲା, "ମୋର ସିଏ କଅଣ ହବ ବାବୁ···ମତେ ଟିକିଏ ଖାଲି ଛଡ଼ିଆ-ବଟରେ ପହଞ୍ଚେଇ ଦିଅ ।"

ଚଇଁ ଜେନାର ଗଳାରେ ଅନୁନୟ ନ ଥିଲା—ଥିଲା ଦାବୀ··· କହିଲା—"କେତେ ବାବୁ ଏଇ ବାଟେ ମୋଟରରେ ବସି ଗଲେଣି —କେତେ ନେହୁରା ହେଇ କହିଲି ମତେ ଟିକିଏ ଛଡ଼ିଆରେ ପହଞ୍ଚେଇ ଦିଅ—ମୁଁ ମଟର ତଳେ ବସି ଚାଲିଯିବି—କେହି କଥା ଶୁଣନ୍ତେ ।"

ବିଶ୍ୱବନ୍ଧୁ ବୁଝିପାରିଲା ଯେ ଶେଷ ଉପାୟ ଭାବରେ ଚଇଁ ଜେନା କାହାକୁ ଅପେକ୍ଷା ନ କରି ଟ୍ରକ୍ ତଳେ ଆକ୍‌ସେଲକୁ ଜାବୁଡ଼ି ଧରି ବସିଛି—ସେ ଜାଣେ ତାକୁ କେହି ଛୁଇଁବାକୁ ସାହାସ କରିବେ ନାହିଁ ।

ଧମକ ଦେଇ ବିଶ୍ୱବନ୍ଧୁ କହିଲା —

"ତୁ ଯଦି ଗାଡ଼ିତଳୁ ନ ବାହାରୁ ତେବେ ପୁଲିସ ଡାକ ତତେ ସେଠୁ ବାହାର କରେଇବି — "

ଚଇଁ ଜେନା ଅତି ନିର୍ବିକାରଭାବରେ ଏ କଥାଗୁଡ଼ାକ ଶୁଣିଗଲା··· ।

. ଅଜିତ୍ ସିଂ ଡ୍ରାଇଭର ଯାତ ଦେଖି ଫେରିଲା···

ବିଶ୍ୱବନ୍ଧୁ ତାକୁ ଟର୍ଚ୍ଚଟା ଆଣିବାକୁ କହିଲା···ଟର୍ଚ୍ଚର ଆଲୁଅ ଚଇଁ ଜେନାର ବିକଳାଙ୍ଗଟିକୁ ଆଲୋକିତ କଲା···ଶିହରି ଉଠିଲା ବିଶ୍ୱବନ୍ଧୁ···ରକ୍ତହୀନ ପାକର ମୁହଁରେ ବିଦ୍ରୋହର ଏକ ଦୃଢ଼ ସଙ୍କେତ—ମାଦଳା ହାତ ଦୁଇଟା ତାର ଚକର ଆକ୍ସେଲ ଉପରେ ଅଠାରେ ଲାଗି ଗଲାଭଳି ରହିଛି—ଅଜିତ୍ ସିଂ ଘୃଣାରେ ନାକଟେକି କହିଲା ତା ଓଡ଼ିଆରେ—"ୟେ ତୋ କି ଏକ କୋଢ଼ିଆ ଅଛି··· ଆବ୍‌ବେ ଏ ଲେଙ୍ଗଡ଼ା—ଉହା ବସିକରି କ'ଣ କରୁଚୁ···ଚଲ୍— ନିକଲ୍ ।"

ବିଶ୍ୱବନ୍ଧୁ ଡ୍ରାଇଭରକୁ ଇଙ୍ଗିତରେ ଚଇଁ ଜେନାକୁ ଗାଳିଦେବାକୁ ମନାକଲା ।

ବହୁ ଲୋକଙ୍କର ବହୁ ଅନୁରୋଧ ପରେ ବି ଚଇଁ ଜେନା ଟ୍ରକ ତଳେ ଅଚଳ-ଅଟଳଭାବରେ ବସି ରହିଲା··

"ଏ ବୁଢ଼ା ଆମକୁ ହରବରରେ ପକେଇବ ଦେଖୁଚି—ହଉ ଦେଖାଯାଉ କ'ଣ ହଉଚି—ଡ୍ରାଇଭର, ତମେ ଯାଅ ଯାତରୁ ସମସ୍ତଙ୍କୁ ଡ଼ାକି ଆଣିବ—ବୁଢ଼ାକୁ କିଛି ମାରଧର କି ଗାଳିଗୁଲଜ କରିବ ନି···ମୁଁ ଆସେଁ—" କହି ଆମାଶୟ ରୋଗୀ ବିଶ୍ୱବନ୍ଧୁ ତରତର ହୋଇ ଗାଡ଼ିଆଆଡ଼େ ଚାଲିଗଲା ।

ଫେରିଆସିଲାବେଳକୁ ଟ୍ରକ ପାଖରେ ଗୋଟିଏ କନେଷ୍ଟବଲ ଛଡ଼ା ଆଉ କେହି ନାହାନ୍ତି—କିନ୍ତୁ ଚଇଁ ଜେନାର କୌଣସି ସ୍ଥାନ ପରିବର୍ତ୍ତନ ହୋଇନ—ଯଥାସମ୍ଭବ ନିକଟକୁ ଯାଇ ବିଶ୍ୱବନ୍ଧୁ କହିଲା—

"ଏ ଚଇଁ ଜେନା—ଆ ଟିକେତଳକୁ ବାହାରିଆ—ମୁଁ ତତେ ଗୋଟେ ଟଙ୍କା ଦଉଚି ନେ...କାଇଁକି ଏମିତି ଆମକୁ ହଇରାଣ କରୁଚୁ କହିଲୁ ? ଆ...ବାହାରିଆ—ତା ନହେଲେ ପୁଲିସ ଆସି ତତେ ମାରଧର କରିବ... ।"

ନିର୍ଦ୍ଧିକାଭାବରେ ଚଇଁ ଜେନା ଉତ୍ତର କଲା—"ମୁଁ କଣ କଲି କି, ପୁଲିସ ମତେ ମାରିବ...ମୁଁ ଇୟାର ଉପରେ ଟିକିଏ ବସି ଛତିଆ ଯାଏଁ ଚାଲିଯିବି ।"

"ଛତିଆ କାହିଁକି ଯିବୁ କହିଁଲୁ ?"

"ଛତିଆବଟଙ୍କଠେଇ ଅଧିଆ ପଡ଼ିବି ।"

ମାଦଳ ହୋଇସାରିଲା ପରେ ବି ଚଇଁ ଜେନା ଅଧିଆ-ପଡ଼ିବ...ଚଇଁ ଜେନା ବର୍ତ୍ତମାନ ଭାବୁଚି ତାର ହାତ ଗୋଡ଼ ସବୁ କଅଁଳ ଯିବ—ବିଶ୍ୱବନ୍ଧୁଙ୍କର ବିସ୍ମୟର ସୀମା ରହିଲା ନି—

ସେ ପଚାରିଲା—"ଯେତେବେଳେ ଚାଲିବୁଲି ପାରୁଥିଲୁ ସେତେବେଳେ କଅଁ ଛତିଆ ବଟକୁ ଚାଲିଗଲୁନି ? ମୋଟେ ତ ଛ' କି ସାତମାଇଲ ବାଟ—"

ସେଇ ଅନ୍ଧାର ଭିତରେ ବି ଚଇଁ ଜେନାର ବଦ୍ରୋହୀ ଆଖି ଦୁଇଟି ଜଳି ଉଠିଲା ପରି ଜଣାଗଲା...କହିଲା—

ମୁଁ ଯାଇ ପାରିଥାନ୍ତି—ହେଲେ ଏଇ ଧୋବଧାଉଳିଆ ବାବୁମାନଙ୍କ ପେଇଁ ଯାଇ ପାରିଲି ନି ।

"ପାଞ୍ଚବର୍ଷ ତଳେ ମୋ ଦିହରେ ଏ ବେମାରି ବାହାରିଲା—ଦିହଯାକ ଛଉ ହେଇଗଲା—କାନ ନାକ ଫୁଲିଗଲା···ମତେ ସମସ୍ତେ କହିଲେ ଛତିଆ ବଟଙ୍କ ପାଖେ ଅଧିଆ ପଡ଼ିଲେ ଭଲ ହେଇଯିବ··· ବଡ଼ ପ୍ରତେକ୍ଷ ଠାକୁରେ···ସେଇବର୍ଷ ଇମିତି ଭୋଟ ନିଆ କାମ ଚାଲିଥାଏ । କେତେ ବାବୁ ଏ ବର୍ଷ ଭଳିଆ ଆସି ଗାଁରେ ସଭା ସମିତି କରି ତାଙ୍କୁ ସବୁ ଭୋଟ ଦବାପାଇଁ କହିଲେ । ଯେଉଁଦିନ ଆମ ଏଠି ଭୋଟ ନିଆହେବ, ସେଦିନ ସକାଳୁ ମୁଁ ବାହାରିଲି ଛତିଆବଟ । ମୋ ନାଁ ଭୋଟ ତାଲିକାରେ ଥାଏ—ହେଲେ ମୁଁ ତ ବେମାରିଆ ଲୋକ—ଭୋଟ କଥା ମୋର କିଏ ଭାବୁଚି—ମୁଁ ବାଡ଼ିଖଣ୍ଡିଏ ଧରି ବାହାରିଚି— ଜଣେ ସହରିବାବୁ ଆସି ମତେ ପଚାରିଲେ—"କିରେ ବୁଢ଼ା ବାହାରୁଚୁ ଭୋଟ ଦେବାପାଇଁ ? କୋଉ ବାକ୍ସରେ ଦବୁ ?"—ମୁଁ କହିଲି—"ବାବୁ, ମୁଁ ଭୋଟ ଦବାକୁ ଯାଉନି—ମୋର ସେଥିରେ କି ଥାଏ ? ମୁଁ ଯାଉଚ୍ଛି ଛତିଆବଟ ।"

"ବାବୁଜଣକ ପଚାରିଲେ—ଛତିଆ ଯାଉଚୁ କିଆଁ ?"

କହିଲି, "ମୋର ବଡ଼ରୋଗ ହେଇଚି ବାବୁ, ଅଧିଆ ପଡ଼ିବି—ଠାକୁରେ ଭଲ କରିଦେବେ ।"

ବାବୁ ଜଣକ ପାଟିକରି ହସି କହିଲେ—

"କିରେ ଠାକୁରେ ଯଦି ରୋଗ ଭଲ କରିଦିଅନ୍ତେ ତେବେ ଆଉ ଡାକତର, କବିରାଜ ସବୁ ଥାଆନ୍ତେ କିଆଁ । ଆଜିକାଲି ଏଇ

ବଡ଼ରୋଗକୁ କେତେ ସବୁ ଭଲ ଭଲ ଔଷଧ ବାହାରିଲାଣି—କଟକ ଯାଇ ଚିକିତ୍ସା କଲେ ଭଲ ହୋଇଯିବୁ···”

ମୁଁ କହିଲି—“ବାବୁ ! କଟକ କିଏ ମୁଁ କିଏ ?”

ସେ ବାବୁ ଜଣକ କହିଲେ—“ଆରେ, ମୁଁ ନେଇଯିବି··· ତୁ ଚାଲ ଆଗ ଭୋଟ ଦେବୁ···ଶୁଣ୍ ! ତୁ ‘କଦଳୀ’ ଚିହ୍ନଥିବା ବାକ୍ସରେ ଭୋଟ ଦବୁ···ବୁଝିଲୁ ? ଆମ ପାର୍ଟି ସରକାର ଗଢ଼ିଲେ ଦେଶରେ କେତେ ଉପକାର କରିବୁ । ଆମ ଗାଁ-ଗଣ୍ଡାରେ ଯେତେ କୋଢ଼ିଆ ଅଛନ୍ତି ତାଙ୍କୁ ତ ଆଗ ଭଲ କରିବେ ଔଷଧପତ୍ର ଖୁଆଇ- ତୁ ଛ ମାସ ଭିତରେ ଭଲ ହୋଇଯିବୁ । ମିଛଟାରେ କାହିଁ ଛକିଆ- ବାଟରେ ନ ଖାଇ ନ ପିଇ ଅଧିଆ ପଡ଼ିବୁ କହିଲୁ—କିଛି ଫଳ ହେବନି— ।”

ମୁଁ ପଚାରିଲି—“ବାବୁ, ମୁଁ ନିଶ୍ଚେ ଭଲ ହୋଇଯିବି ?”

ସେ ବାବୁ ଜଣକ କହିଲେ—“ମୁଁ କଅଣ ତତେ ମିଛ କହୁଚି ? ଦେଖିବୁନି···ମୁଁ ତତେ ନିଜେ ଆସି ମଟରରେ ବସାଇ କଟକ ନେଇଯିବି···ଚାଲ୍ ଚାଲ୍ ସକାଳ ସକାଳ ଭୋଟ ଦେଇ ଆସିବୁ, ଚାଲ୍—” .

ମୁଁ କହିଲି—ବାବୁ, ମୁଁ କୋଢ଼ିଆଟା—ମତେ ସେଠୁ ଘଉଡ଼ି ଦେବେ—”

ବାବୁ କହିଲେ—“କିଏ ଘଉଡ଼ି ଦେବ ମୁଁ ଦେଖିବି— କୋଢ଼ିଆମାନେ ବି ଭୋଟ ଦେଇ ପାରିବେ ବୋଲି ଆଇନରେ ଅଛି; ଆ, ମୋ ସାଙ୍ଗରେ ଆ—ମୁଁ ସବୁ ସୁବିଧା କରିଦେବି ।”

ମୁଁ ସେ ବାବୁଙ୍କ ସାଙ୍ଗେ ଆସିଲି ଭୋଟ ଦବାକୁ—

"କଦଳୀ" ଶବ୍ଦ ଯେଉଁ ବାକ୍ସ ଦେହରେ ଥିଲା ସେଇଥିରେ ଶ୍ୱେତ କାଗଜ ଗଳେଇ ଦେଇ ଆସିଲି···ବାହାରେ ସେଇବାବୁ ଥିଲେ—ତାଙ୍କୁ ଆସି କହିଲି···ସେ ଭାରି ଖୁସି ହୋଇଗଲେ—କହିଲେ—"ବୁଡ଼ା ଯା ଘରେ ନିଶ୍ଚିନ୍ତରେ ଖାଇପିଇ ବସିଥା—ଏଇ ଶ୍ୱେତ କାର୍ମ ସରିଲେ ମୁଁ ତତେ ନିଜେ ଆସି କଟକ ବଡ଼ ଡାକ୍ତରଖାନାକୁ ନେଇ ଯିବି···ମଟରରେ ବସେଇ···"

ସେଇ ବାବୁଙ୍କ କଥାକୁ ସତ ମଣି ମୁଁ ଘରେ ବସିଲି—ଛଡଆ ଗଲିନି···ଶ୍ୱେତ କାମ ସରିଲା···ମାସେ ଗଲା—ଦି'ମାସ ଗଲା··· କାଇଁ, ସେ ବାବୁଙ୍କ ଦେଖା—ଚାହିଁ କରି ବସିଥାଏଁ—ବାବୁ ଆସିବେ—ମତେ କଟକ ନେଇ ଭଲ କରିଦେବେ—ବର୍ଷେ ଗଲା—ଶେଷକୁ ମୋ ଆଣ୍ଠୁ ଗଣ୍ଠିକି ବାତ ଧରି ପକେଇଲା—ଆଉ ଉଠି ବସି ପାରିଲିନି - ଯିଏ ଗଣ୍ଡିଏ ଖାଇବାକୁ ଦେଲେ ଖାଇଲି—ନ ହେଲେ ଯୋଉଠି ବସିଲି ସେଇଠି···ସେ ବାବୁ ମତେ କଦଳୀ ଧରେଇ ଦେଇଗଲେ···"

ପଡ଼ିଆରେ ମେଳଣ ଚାଲିଛି···ଘଣ୍ଟ ବାଦ୍ୟର ଶବ୍ଦ ନିଶୀଥର ସ୍ତବ୍ଧତାକୁ ଥରେଇ ଦେଇ ଭାସିଆସୁଛି···ବିଶ୍ୱବନ୍ଧୁ ରୁଦ୍ଧ ନିଃଶ୍ୱାସରେ ଶୁଣି ଯାଉଛି କୋଡ଼ିଆ ଜୀବନର ଗୋଟିଏ କରୁଣ ଅଧ୍ୟାୟ ।

ଚଇଁ ଜେନା ତାର କଥା ବନ୍ଦ କଲା ଅଣନିଃଶ୍ୱାସୀ ହୋଇଯାଇ—କିନ୍ତୁ ବିଶ୍ୱବନ୍ଧୁ ତଥାପି ଶୁଣୁଛି—ତଥାପି ଶୁଣୁଛି—କେତେ ଶ୍ୱେତପ୍ରୟାସୀ ଏମିତି କେତେ ଦୁଃସ୍ଥଙ୍କୁ ଏଇପରି ନିଷ୍ଫଳ ଆଶ୍ୱାସନା ବାଣୀ ଶୁଣେଇ ତାଙ୍କଠୁ ଶ୍ୱେତ ଆଦାୟ ପାଇଁ ପରିଶ୍ରମ କରୁଛନ୍ତି···ଦର୍ଶଣୀର ଦୁହିଁ ହୋଇ ଯାଉଛି, ସେମାନେ ବକ୍ତୃତା ଦେଉଥିବେଳେ···ସ୍ୱାର୍ଥତ୍ୟାଗର ଏକ ବିରାଟ ପ୍ରତୀକଭାବରେ

ସେମାନେ ଜନତା ଆଗରେ ଠିଆ ହୋଇ ଗବଡ଼ ଭଳି ଘନ ଓ ମିଠା କଥା କହୁଛନ୍ତି ।

ବିଶ୍ୱବନ୍ଧୁ ଚଇଁ ଜେନା ଆଡ଼େ ଗୁହାଁଲ···ଅଟକି ପକେଇଲା, ତାଉପରେ—ଦେଖିଲା ଚଇଁ ଜେନା ତାର କଥା କହି ଦେଇ ଯେପରି ଖୁବ୍ ନିଶ୍ଚିନ୍ତ ହୋଇଯାଇଛି···ଚକ ଆକ୍ସେଲ ଉପରେ ଚଢ଼ି ଛଣ୍ଡିଆ ଯିବାର ଦାବୀ ଯେପରି ତାର ଆହୁରି ଦୃଢ଼ ହୋଇଯାଇଛି ।

ବିଶ୍ୱବନ୍ଧୁର ଇଚ୍ଛା ହେଲା ତାକୁ ଟ୍ରକ୍‌ରେ ବସେଇ ଛଣ୍ଡିଆଯାଏ ନେଇଯିବ—କିନ୍ତୁ ତା ବା ସମ୍ଭବ ହେବ କିପରି ? ପୋଲିଂଅଫିସର ଓ ପୁଲିସ ପାର୍ଟି ନିଶ୍ଚୟ ଆପତ୍ତି କରିବେ ।

ପୋଲିଂ ପାର୍ଟିର ସମସ୍ତେ ଯାତ ଦେଖି ଫେରିଲେ—ଡ୍ରାଇଭରଠାରୁ ସବୁ କଥା ଶୁଣି ସାରିଥିଲେ ସେମାନେ ।

ଚଇଁ ଜେନା ଉପରେ ଆରମ୍ଭ ହେଲା ଖୁବ୍ ତେରମେରି··· ଗାଳି ଗୁଲଜ···ଶଳାଠାରୁ ହାରାମଜାଦା ପର୍ଯ୍ୟନ୍ତ···କିନ୍ତୁ କୋଡ଼ିଆ ଚଇଁ ଜେନା ନିର୍ବିକାର···ସେ ଜାଣେ ତାଙ୍କୁ ସେଠୁ କେହି ଉଠେଇବାକୁ ସାହସ କରିବେ ନାହିଁ—ତାକୁ ଛୁଇଁବାକୁ ଡରିବେ; ବିଷଧର ସାପ ଅପେକ୍ଷା ସେ ଆହୁରି ଭୟଙ୍କର—ଚଇଁ ଜେନା ଯେ କୌଣସି ମତେ ଯିବ—ଆଜି ଆଉ ସେ କଦଳୀ ଧରିବାକୁ ଗୁହେଁନା ।

ତେଣୁ ସମସ୍ତେ ଠିକ୍ କଲେ ଗୋଟାଏ ବାଉଁଶ ତଡ଼ା ଆଣି ତାକୁ ସେଠୁ କେଞ୍ଚି ବାହାର କରିବେ । ସେମାନଙ୍କର ଏ ସିଦ୍ଧାନ୍ତ ଶୁଣି ବିଶ୍ୱବନ୍ଧୁ ଚମକି ପଡ଼ି ପଗୁରିଲା––"ଏଁ କଅଣ କହୁଛନ୍ତି ଆପଣମାନେ ? ତାକୁ ସେଠୁ କେଞ୍ଚି ବାହାର କରିବେ ?"

ଜଣେ ପୋଲିଂ ଅଫିସର କହିଲେ—"ଆଉ ଉପାୟ କଣ ?"

"ଅସମ୍ଭବ, ତା ହୋଇ ପାରିବ ନି" ବିଶ୍ୱବନ୍ଧୁ ଦୃଢ଼ ଓ କର୍କଶ ଗଳାରେ କହିଲା ।

"ତେବେ କଅଣ ଏଇଠି ପଡ଼ି ରହିବାକୁ ପଡ଼ିବ ଆପଣ କହୁଛନ୍ତି ? ଭଲକଥା ହେଲା ତ ?"

"କିନ୍ତୁ ତା ବୋଲି ତାକୁ କେଞ୍ଚାକେଞ୍ଚି କରି ସେଠୁ ବାହାର କରିବେ ? ସିଏ ଗୋଟାଏ କୁକୁର ନା ବିଲେଇ ନା କଅଣ ? ମୁଁ ବାସ୍ତବିକ ଭାବି ପାରୁନି କିମିତି ଆପଣମାନେ ଏ ଧରଣର ଚିନ୍ତା ମନରେ ଆଣି ପାରୁଛନ୍ତି···"

ଅନ୍ୟ ଜଣେ ପୋଲିଂ ଅଫିସର ବିରକ୍ତ ହୋଇ କହିଲେ—"ହଉ ଆପଣଙ୍କୁ ତେବେ ଯାହା ଭଲ ଦିଶୁଚି କରନ୍ତୁ ।"

ସମସ୍ତେ ଚୁପ୍ କଲେ—ବିଶ୍ୱବନ୍ଧୁ ବୁଝିପାରିଲା, ବହୁତଗୁଡ଼ିଏ ମନର ପୁଞ୍ଜିଭୂତ ବିରକ୍ତି ଓ ଅସନ୍ତୋଷ ତା ଉପରେ ଅଜାଡ଼ି ହୋଇପଡ଼ୁଛି । ବୁଡ଼ିଯାଉଥିବା ଜହ୍ନର ମଇଳା ଆଲୁଅରେ ସେ ଦେଖିପାରିଲା କେତେଗୁଡ଼ିଏ ଗମ୍ଭୀର ନିଶ୍ଚଳ ମୁହଁ—ତୀବ୍ର ସମାଲୋଚନାର ବିଷାକ୍ତ ପରିପ୍ରକାଶ ଯେପରି ସେ ମୁହଁଗୁଡ଼ିକୁ ଅସୁନ୍ଦର କରି ପକେଇଚି ।

ବିଶ୍ୱବନ୍ଧୁ ସେମାନଙ୍କୁ କୌଶଳରେ ଦୂରକୁ ଡାକିନେଲା—ସେମାନଙ୍କ ସହିତ ବହୁତ ସମୟ ଯାଏଁ ପରାମର୍ଶ କଲା । ସେ ସେମାନଙ୍କ ସହିତ ବହୁତ ବୁଝେଇବାକୁ ଚେଷ୍ଟାକଲା – ଧୈର୍ଯ୍ୟ ଧରିବାକୁ କହିଲା—କିନ୍ତୁ ସେମାନେ କେବଳ ଗୋଟିଏ କଥା କହିଲେ "ନା, ତାକୁ ସେଠୁ ପୁଲିସ ସାହାଯ୍ୟରେ ତଡ଼ାହାଡ଼ି କେଞ୍ଚି ବାହାର ନ କଲେ ସେଠୁଁ ବସ୍ ଯିବାର ଉପାୟ ନାହିଁ—"

ଶେଷକୁ ନିରୁପାୟ ହୋଇ ବିଶ୍ୱବନ୍ଧୁ ଅଜିତସିଂହଙ୍କୁ ଡାକି ତା ସହିତ କଅଣ କଥାବାର୍ତ୍ତା ହେଲା ।

ତା'ପରେ ଚଇଁ ଜେନାକୁ ଆସି ଅତି ନରମ ଗଳାରେ କହିଲା—"ହଉ ତୁ ବାହାରି ଆ ବୁଢ଼ା—ଆମେ ତତେ ମଟର ଭିତରେ ବସେଇ ନେଇଯିବୁ—"

ବାହାରିବାର କୌଣସି ଆଗ୍ରହ ପ୍ରକାଶ ନ କରି ଚଇଁ ଜେନା କହିଲା—"ତମେ ମିଛ କହୁଚ ବାବୁ—"

"ମୁଁ ସତ କହୁଚିରେ—ତୁ ଯିବୁ ଆମ ସାଥିରେ ।"

"ହଁ—ମୁଁ କୋଡ଼ିଆଟା—ଘା ଘଉଡ ଦିହରେ ଭର୍ତ୍ତି । ମତେ ଫେର୍ ତମ ସାଙ୍ଗରେ ବସେଇ ନେବ ।"

ଅନ୍ୟାନ୍ୟ ପୋଲିଂ କର୍ମଚାରୀମାନେ ବିଶ୍ୱବନ୍ଧୁର ଏପରି ସିଦ୍ଧାନ୍ତ ଶୁଣି ପରସ୍ପରର ମୁହଁକୁ ଚାହାଁ-ଚାହିଁ ହେବାକୁ ଆରମ୍ଭ କଲେ—ବିସ୍ମୟସୂଚକ ଭଙ୍ଗୀରେ ।

ବିଶ୍ୱବନ୍ଧୁ ଆଦେଶ ଦେବା ଭଙ୍ଗୀରେ ଜଣେ କର୍ମଚାରୀଙ୍କୁ କହିଲା—"ଆପଣ ଉଠିବେଟି ଟ୍ରକ୍ ଉପରେ—ଜିନିସପତ୍ର ଆଡ଼େଇ ବୁଢ଼ାପେଇଁ ଟିକିଏ ଜାଗା କରିଦେବେ—ଯାନ୍ତୁ ଯାନ୍ତୁ, ଉଠନ୍ତୁ ।"

, ଚଇଁ ଜେନା ଦେଖିଲା ଜଣେ ବାବୁ ଟ୍ରକ୍ ଉପରକୁ ଉଠିଲେ—ଜିନିସପତ୍ରର ଧଡ଼ଧାଡ଼ ଶବ୍ଦ ହେଲା···

ବିଶ୍ୱବନ୍ଧୁ ଚଇଁ ଜେନାକୁ ଡାକିଲା—

"ଆ—ବୁଢା—ମଟର ଭିତରକୁ ଯିବୁ ଆ ।"

"ମତେ ତା' ଉପରକୁ କିଏ ଉଠେଇଦେବ ?

"ମୁଁ ଉଠେଇ ଦେବି—ତୁ ଆ—ଦେଖିବୁ ମୁଁ ତତେ ଉଠେଇ ଦଉଛି କି ନାହିଁ—"

ଚଇଁ ଜେନା ମୁଣ୍ଡ ଟେକି ବିଶ୍ୱବନ୍ଧୁ ମୁହଁକୁ ଚାହିଁଲା—ତା ମୁହଁରେ କଅଣ ଦେଖିଲା କେଜାଣି, ଧୀରେ ଧୀରେ ଟ୍ରକ୍‌ତଳୁ ବାହାରି

ଆସିଲା—ଯେପରି ଯୁଗଯୁଗର ଏକ ବାଷ୍ପରୁଦ୍ଧ ପ୍ରେତାତ୍ମା ହଠାତ୍ ତା ଘଟ ଭିତରେ ପୁନଃ ପ୍ରବେଶ କରି ପୁଲକ ଚଞ୍ଚଳ ହୋଇ ଉଠିଛି ।

ବିଶ୍ୱବନ୍ଧୁ ଦାନ୍ତ ଓଠ ଚପି ଠିଆ ହୋଇଛି—ଅନ୍ୟ କର୍ମଚାରୀମାନେ ଉତ୍ସୁକ ହୋଇଯାଇ କଅଣ ସବୁ ଟ୍ରପ୍‌ଟାପ୍ ହେଉଛନ୍ତି—ଟ୍ରକ୍‌ଠାରୁ ତିନହାତ ଦୂରକୁ ଚଇଁ ଜେନା ଘୁଷୁରି ଘୁଷୁରି ଆସି ଅତି ତୃପ୍ତ ଗଳାରେ ବିଶ୍ୱବନ୍ଧୁଙ୍କୁ ଚାହିଁ ହାତଠେକି କହିଲା—

"ଦିଅ ବାବୁ, ମତେ ମୋଟର ଉପରକୁ ଉଠେଇ ଦିଅ—ତମର ବାବୁ କେତେ—"

ଚଇଁ ଜେନାର କଥାକୁ ଅସମ୍ପୂର୍ଣ୍ଣ ରଖି ଟ୍ରକ୍ ଘର୍‌ଘର୍ ଶବ୍ଦ କରି ସେଠୁଁ ଚାଲିଗଲା ପ୍ରାୟ ଶହେ ହାତ ଦୂରକୁ ।

ଚଇଁ ଜେନାର ହାତ ଦୁଇଟା ତଳକୁ ଖସି ପଡ଼ିଲା—ବିଶ୍ୱବନ୍ଧୁ ବିସ୍ମିତ କର୍ମଚାରୀମାନଙ୍କ ଆଡ଼େ ଚାହିଁ କହିଲା—"ଆଉ ଠିଆହୋଇ ରହିଲେ କାହିଁକି—ଯାନ୍ତୁ···ଟ୍ରକ୍‌ରେ ଉଠନ୍ତୁ ।"

ସମସ୍ତେ ସେଠୁ ଚାଲିଗଲେ ନୀରବରେ···ବିଶ୍ୱବନ୍ଧୁ ଚାହିଁଲା ଲଜ୍ଜିତ ମୁହଁରେ ଚଇଁ ଜେନାକୁ—ମୁହଁ ତଳକୁ କରି ଚଇଁ ଜେନା କହିଲା—କ୍ଷୀଣ ସ୍ୱରରେ···

"ମୁଁ ଜାଣିଥିଲି ତମେ ମତେ ଠକେଇ ଦବ—ହଉ, ଯାଅ—"

ବିଶ୍ୱବନ୍ଧୁ ମୁଣ୍ଡ ପୋତି ପୋତି ଟ୍ରକ୍ ଆଡ଼େ ଆଗେଇ ଚାଲିଲା । ଟ୍ରକ୍ ପାଖକୁ ଯାଇ ଫେରି ଚାହିଁଲା—

ଦେଖିଲା ଚଇଁ ଜେନା ସେଠି ନିଶ୍ଚଳଭାବରେ ବସିଛି, ଗୋଟିଏ ଅସ୍ପଷ୍ଟ କଳା ମୂର୍ତ୍ତିଟିଏ ଭଳି ।

ବାଷ୍ପରୁଦ୍ଧ ପ୍ରେତାତ୍ମା ପୁଣି ସେ ଘଟ ପରିତ୍ୟାଗ କରିଛି—।

———

# ପରିଚୟ

## ଧୂଳିଆ ବାବା

ସ୍ୱର୍ଗତ ଫକୀରମୋହନ ସେନାପତି

( ଗଳ୍ପସ୍ୱଳ୍ପ, ପ୍ରଥମଭାଗ )

ଆଧୁନିକ ଓଡ଼ିଆ ଗଦ୍ୟଶୈଳୀର ପ୍ରବର୍ତ୍ତକ ସ୍ୱର୍ଗତ ଫକୀରମୋହନ ସେନାପତି ୧୮୪୩ ଖ୍ରୀଷ୍ଟାବ୍ଦ ଜାନୁଆରୀ ମାସରେ ବାଲେଶ୍ୱରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର କ୍ଷୁଦ୍ରଗଳ୍ପ ରଚନା-ରୀତି ବର୍ତ୍ତମାନ ସୁଦ୍ଧା ଓଡ଼ିଶାର କ୍ଷୁଦ୍ରଗଳ୍ପ-ଲେଖକଙ୍କ ପାଇଁ ଆଦର୍ଶ ହୋଇ ରହିଛି । ଓଡ଼ିଶାର ଦୈନନ୍ଦିନ ଜୀବନର ବାସ୍ତବଚିତ୍ର ପ୍ରଦାନ କରି ସରଳ ଅଥଚ ଶକ୍ତିଶାଳୀ ଭାଷାର ପ୍ରୟୋଗରେ ଫକୀରମୋହନ ମନୋରଞ୍ଜକ ଓ ଶିକ୍ଷାପ୍ରଦ କ୍ଷୁଦ୍ର ଗଳ୍ପ ସୃଷ୍ଟି କରିଛନ୍ତି । କ୍ଷୁଦ୍ର ଗଳ୍ପ ଛଡ଼ା ମାମୁଁ, ଛମାଣ ଆଠଗୁଣ୍ଠ, ଲଛମା, ପ୍ରାୟଶ୍ଚିତ୍ତ ପ୍ରଭୃତି ଉପନ୍ୟାସ ଓ ବହୁକାବ୍ୟ-କବିତାର ଫକୀରମୋହନ ଲେଖକ ।

"ଧୂଳିଆ ବାବା" ଗଳ୍ପଟିରେ ଫକୀରମୋହନଙ୍କର କ୍ଷୁଦ୍ର ଗଳ୍ପ ରଚନାଶୈଳୀର ପରିପୂର୍ଣ୍ଣ ପ୍ରକାଶ ହୋଇଛି ।

---

## ବାଁ ଡାହାଣ

ସ୍ୱର୍ଗତ ପଣ୍ଡିତ ଗୋଦାବରୀଶ ମିଶ୍ର

( ନଅଟି ଗଳ୍ପ )

ଲବ୍ଧପ୍ରତିଷ୍ଠ ସାହିତ୍ୟିକ ପଣ୍ଡିତ ଗୋଦାବରୀଶଙ୍କ ଜନ୍ମ ୧୮୮୬ ମସିହାରେ ବାଣପୁରରେ । ସେ ଏକାଧାରରେ ପ୍ରବୀଣ ରାଜନୀତିଜ୍ଞ ଏବଂ ସାହିତ୍ୟିକ ଥିଲେ । ୧୯୫୬ ଜୁଲାଇମାସ ୨୬ ତାରିଖରେ ସେ ସ୍ୱର୍ଗାରୋହଣ କଲେ ।

ପଣ୍ଡିତ ଗୋଦାବରୀଶ ମିଶ୍ର 'ବାଁ ଡାହାଣ' ଗଳ୍ପଟିକୁ ୧୯୫୧ ମସିହାରେ ଲେଖିଥିଲେ । ଗଳ୍ପଟି ମନୋରଞ୍ଜକ ଓ ଶିକ୍ଷାପ୍ରଦ ।

---

## ତୁମେ କି ସତେ ପାଷାଣ ହେଲ ?

ସ୍ୱର୍ଗତ ଗୋଦାବରୀଶ ମହାପାତ୍ର

ସ୍ୱର୍ଗତ ଗୋଦାବରୀଶ ମହାପାତ୍ର ୧୯୦୧ ମସିହାରେ ବାଣପୁରରେ ଜନ୍ମ-ଗ୍ରହଣ କରିଥିଲେ । "ନିଆଁ ଖୁଣ୍ଟା"ର ସମ୍ପାଦନା କରି ସେ ଓଡ଼ିଶାର ଘରେ ଘରେ ପରିଚିତ । ତାଙ୍କର ଅଧିକାଂଶ କବିତା ସାମାଜିକ ଅନ୍ୟାୟ ଅତ୍ୟାଚାରକୁ ବ୍ୟଙ୍ଗ କରି ଲେଖାଯାଇଛି; କିନ୍ତୁ କେବଳ ହାସ୍ୟରସ ସୃଷ୍ଟିକରି ବ୍ୟଙ୍ଗ-ବିଦ୍ରୂପ କରି ଲେଖକ ସନ୍ତୁଷ୍ଟ ହୋଇଯାଇନାହାନ୍ତି । ଗଭୀର ଆଦର୍ଶବାଦର ସ୍ୱପ୍ନ ମଧ୍ୟ ଲେଖକଙ୍କର ବିଦ୍ରୋହୀ ଆତ୍ମା ବହୁ ଲେଖାରେ ଦେଖିଛି ।

ପଣ୍ଡିତ ଗୋପବନ୍ଧୁ ଓଡ଼ିଶାର ପୁରପଲ୍ଲୀରେ ଅଗଣିତ ଓଡ଼ିଆଙ୍କ ହୃଦୟରେ କି ସ୍ଥାନ ରଖିଥିଲେ, ତା'ର ବର୍ଣ୍ଣନା ଏହି କ୍ଷୁଦ୍ର ଗଳ୍ପରେ ଦିଆ-ଯାଇଛି । ଗଳ୍ପଟି ଶୀର୍ଷକ, ଆକର୍ଷକ ଓ ଆଭିସପୂର୍ଣ୍ଣ । ଗଳ୍ପାନ୍ତର ପ୍ରଭାବ ମାର୍ମିକ, ସ୍ପଷ୍ଟ ଓ ସ୍ୱାଭାବିକ ।

---

## ଉପହାର

ପଦ୍ମଭୂଷଣ ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ

( ସାଗରିକା )

୧୯୦୦ ଖ୍ରୀଷ୍ଟାବ୍ଦରେ ଶ୍ରୀ ପାଣିଗ୍ରାହୀଙ୍କର ଜନ୍ମ । ମାଟିର ମଣିଷ, ମୁକ୍ତି-ଗଡ଼ର କ୍ଷୁଧା, ଅମରଚିତା ପ୍ରଭୃତି ଉପନ୍ୟାସ ଓ ସାଗରିକା, ଵୃଶ୍ଚିକଫଳ ପ୍ରଭୃତି ବହୁ କ୍ଷୁଦ୍ର ଗଳ୍ପ ପୁସ୍ତକପାଇଁ ଲେଖକ ଓଡ଼ିଆ ସାହିତ୍ୟରେ ବିଶିଷ୍ଟ ସ୍ଥାନର ଅଧିକାରୀ ।

'ଉପହାର' ଗଳ୍ପଟିରେ ଦୁଇଟି କିଶୋରଙ୍କର ଚରିତ୍ର ଯେପରି ବର୍ଣ୍ଣିତ ହୋଇଛି, ତାହା ଯେ କୌଣସି ପାଠକ ଚକ୍ଷୁରେ ଅଶ୍ରୁ ଆଣିବ । ଦୁଇଟି ସରଳହୃଦୟର ଭ୍ରାତୃପ୍ରେମ ଓ ଭାବାବେଶ ଗଳ୍ପକାରଙ୍କ ସିଦ୍ଧହସ୍ତ ସଫଳତା ସହ ଚିତ୍ରଣ କରିଛି ।

---

## ଘର

ଶ୍ରୀ ଗୋପୀନାଥ ମହାନ୍ତି

( ଗୁଇଆଲୁଅ )

ଶ୍ରୀ ଗୋପୀନାଥ ମହାନ୍ତି ଅମୃତର ସନ୍ତାନ, ପରଜା, ଦାଦିବୁଢ଼ା ପ୍ରଭୃତି ଉପନ୍ୟାସ ଲେଖିଛନ୍ତି । ଆଧୁନିକ ସାହିତ୍ୟର କ୍ଷୁଦ୍ରଗଳ୍ପ ଓ ଉପନ୍ୟାସ ପାଇଁ ଲେଖକ ଅତ୍ୟନ୍ତ ପ୍ରସିଦ୍ଧ ।

'ଘର' ଏକ ବାସ୍ତବବାଦୀ କ୍ଷୁଦ୍ର ଗଳ୍ପ । ଆଧୁନିକ ସହରଗୁଡ଼ିକରେ ମଧ୍ୟବିତ୍ତ ଲୋକ ଅନୁଭବ କରୁଥିବା ଅସୁବିଧା ଓ ଆକାଂକ୍ଷା ଗଳ୍ପଟିରେ ଚିତ୍ରିତ ହୋଇଛି ।

---

## ବଉଳ

ଅଧ୍ୟାପକ ଶ୍ରୀ ରାଜକିଶୋର ରାୟ

( ମନର ମୃଣାଳ )

୧୯୧୪ ମସିହାରେ ଲେଖକଙ୍କର ଜନ୍ମ । ଲେଖକ ବର୍ତ୍ତମାନ ଅବସର ଗ୍ରହଣ କରିଛନ୍ତି । କ୍ଷୁଦ୍ରଗଳ୍ପ ଲେଖି ସେ ଓଡ଼ିଶାରେ ପ୍ରତିଷ୍ଠା ଲାଭ କରିଛନ୍ତି । ଆଲଙ୍କାରିକ ଭାଷା ବ୍ୟବହାର କରି ଲେଖକ ଏକ ମନୋରଞ୍ଜନ ଶୈଳୀ କ୍ଷୁଦ୍ରଗଳ୍ପ କ୍ଷେତ୍ରରେ ପ୍ରଚଳିତ କରିଛନ୍ତି ।

'ବଉଳ' ଲେଖକଙ୍କର ଅନ୍ୟତମ ପ୍ରସିଦ୍ଧ ଗଳ୍ପ । ଗଳ୍ପଟିରେ ଲେଖକଙ୍କର ଶୈଳୀର ବିଶେଷତ୍ୱ ପ୍ରକାଶ ପାଇଛି ।

---

## ସାରୀପୁତ୍ର

ଶ୍ରୀ ସୁରେନ୍ଦ୍ର ମହାନ୍ତି

( କୃଷ୍ଣଚୂଡ଼ା )

ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କ ଜନ୍ମ ୧୯୨୦ ମସିହାରେ । ଲେଖକଙ୍କର କୃଷ୍ଣଚୂଡ଼ା, ମହାନଗରୀର ରାତ୍ରି, ରୁଟି ଓ ଚନ୍ଦ୍ର, ଶେଷ କବିତା, ମରାଳର ମୃତ୍ୟୁ ପ୍ରଭୃତି କ୍ଷୁଦ୍ରଗଳ୍ପ ଏବଂ ଅନ୍ଧଦିଗନ୍ତ, ନୀଳଶୈଳ ଇତ୍ୟାଦି ଉଚ୍ଚକୋଟୀର

ଉପନ୍ୟାସ ପୁସ୍ତକ ଓଡ଼ିଶାର ପାଠକ-ସମାଜଦ୍ୱାରା ଆଦୃତ ହୋଇଛି । ନୀଳଶୈଳ ଉପନ୍ୟାସ ସାହିତ୍ୟ ଏକାଡ଼େମୀ ପକ୍ଷରୁ ପୁରସ୍କୃତ ହୋଇଛି । ଲେଖକଙ୍କ ବ୍ୟବହୃତ ଭାଷା ପରିମାର୍ଜିତ, ବଳିଷ୍ଠ ଓ ରୁଚିସମ୍ପନ୍ନ ।

ସଂଗୃହିତଗଳ୍ପଟିରେ ବୁଦ୍ଧଙ୍କର ପଟ୍ଟଶିଷ୍ୟ ସାରିପୁତ୍ର ଓ ତାଙ୍କ ମାତା ଶୂଦ୍ରାଣୀ ରୂପଶ୍ରୀ ହୃଦୟର କରୁଣଚିତ୍ର ଏବଂ ଜୀବନ ଓ ନିର୍ବାଣର ମହତ୍ତ୍ୱ ପ୍ରତିପାଦିତ ।

---

## ଅଶରୀରୀର ଆତ୍ମା

ଶ୍ରୀ ଲକ୍ଷ୍ମୀଧର ମହାନ୍ତି

ଉକ୍ତ ଗଳ୍ପଟିରେ ଜାତିର ଜନକ ମହାମାନବ ମହାତ୍ମାଗାନ୍ଧିଙ୍କ ଯୋଡ଼ହସ୍ତ ଚିତ୍ର ଦେଖିବାପରେ ରାୟବାହାଦୂରଙ୍କର ମାନସିକ ଚରମ ପରିବର୍ତ୍ତନ— ଭାଷା ଓ ଭାବ ମର୍ମସ୍ପର୍ଶୀ ।

---

## ଅନ୍ଧାରୁଆ

ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ

୧୯୧୬ ମସିହାରେ ଖୋର୍ଦ୍ଧା ଅନ୍ତର୍ଗତ ଗୁରୁଜଙ୍ଗ ଗ୍ରାମରେ ଲେଖକଙ୍କର ଜନ୍ମ । ଲବ୍ଧପ୍ରତିଷ୍ଠିତ ସାହିତ୍ୟିକଭାବରେ ଭାରତ ସରକାରଙ୍କ ଠାରୁ ପଦ୍ମଶ୍ରୀ ଉପାଧି ପ୍ରାପ୍ତ ହୋଇଛନ୍ତି । ତାଙ୍କର ରଚନାବଳୀ ମଧ୍ୟରେ ପାଥେୟ, ଅଭିଯାନ, ବାଜିରାଉତ, ପାଣ୍ଡୁଲିପି, ପୂର୍ଣ୍ଣିମା ଓ "୧୯୬୨ କବିତା ଇତ୍ୟାଦି ଉପାଦେୟ । ୧୯୬୨ କବିତା ପୁସ୍ତକଟି ସାହିତ୍ୟ ଏକାଡ଼େମୀ ପକ୍ଷରୁ ପୁରସ୍କୃତ ହୋଇଛି ।

ଉକ୍ତ ଅନ୍ଧାରୁଆ ଗଳ୍ପଟିରେ "ସ୍ପୃଶ୍ୟ ଓ ଅସ୍ପୃଶ୍ୟ" ସମସ୍ୟାର ଭ୍ରାନ୍ତ ଧାରଣା ହେତୁ ସମାଜରେ ବ୍ୟକ୍ତି କିପରି ନିର୍ଯ୍ୟାତିତ ହୁଏ ତାହା ସୂଚିତ ହୋଇଛି ।

---

# ପଣ

ଶ୍ରୀ ପ୍ରଶାନ୍ତଚନ୍ଦ୍ର ଶତପଥୀ

( ଚେଖଫଙ୍କ ଗଳ୍ପ )

ଆନ୍‌ଟନ ପାଭ୍ଲୋଭିଚ ଚେକଭ୍ ରୁଷିଆର ସର୍ବଶ୍ରେଷ୍ଠ କ୍ଷୁଦ୍ରଗଳ୍ପ-ଲେଖକ । ୧୮୬୦ ଖ୍ରୀଷ୍ଟାବ୍ଦରେ ସେ ଜନ୍ମଗ୍ରହଣ କରିଥିଲେ । ୪୫ ବର୍ଷ ବୟସରେ ତାଙ୍କର ମୃତ୍ୟୁ ହୋଇଥିଲା । ଚେକଭଙ୍କର ସଂକ୍ଷେପରେ ବହୁତ କଥା କହିବା କ୍ଷମତା ଅତୁଳନୀୟ ।

ତାଙ୍କର 'ପଣ' ଗଳ୍ପ ଉତ୍କଣ୍ଠା, ଚରିତ୍ରଚିତ୍ରଣ ଓ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ପାଇଁ ବିଖ୍ୟାତ । ଭାରତୀୟ ପରମ୍ପରା ଓ ଦର୍ଶନ ଦୃଷ୍ଟିରୁ ଗଳ୍ପଟି ଭାରତୀୟ ପାଠକମାନଙ୍କ ପାଇଁ ସ୍ୱତନ୍ତ୍ର ଅର୍ଥ ରଖେ ।

ଗଳ୍ପଟିକୁ ଅନୁବାଦ କରିଛନ୍ତି ଶ୍ରୀ ପ୍ରଶାନ୍ତଚନ୍ଦ୍ର ଶତପଥୀ । 'ପାପ ଓ ପ୍ରାୟଶ୍ଚିତ୍ତ' ତାଙ୍କର ଅନୂଦିତ ଗ୍ରନ୍ଥ ।

---

# ରିକ୍‌ସା

ଶ୍ରୀ ଅନନ୍ତ ପ୍ରସାଦ ପଣ୍ଡା

୧୯୦୭ ମସିହା ଜୁଲାଇ ମାସରେ ବାଲେଶ୍ୱର ଜିଲ୍ଲା ସୋରୋ ଥାନା ଅନ୍ତର୍ଗତ କଲ୍ୟାଣୀ ଗ୍ରାମରେ ଲେଖକଙ୍କର ଜନ୍ମ । ରେଭେନ୍‌ସା କଲେଜରୁ ଶିକ୍ଷାପ୍ରାପ୍ତ । ସମବାୟ ବିଭାଗରେ ବହୁବର୍ଷ କାର୍ଯ୍ୟ କରିବା ପରେ ଜଏଣ୍ଟ ରେଜିଷ୍ଟ୍ରାର ଭାବରେ ବର୍ତ୍ତମାନ ଅବସର ଗ୍ରହଣ କରିଛନ୍ତି । ଚାକିରି ଜୀବନ ସଙ୍ଗେ ସଙ୍ଗେ ସାହିତ୍ୟ ସାଧନା କରି ଗଳ୍ପ ଓ ଉପନ୍ୟାସ-ଲେଖକଭାବରେ ପ୍ରତିଷ୍ଠିତ ।

ସଂଗୃହିତ ଗଳ୍ପରେ ଦରିଦ୍ର ରିକ୍‌ସାବାଲା ଚନ୍ଦ୍ର ବେହେରାର ଭବିଷ୍ୟତ କାଳର ମଧୁର ସ୍ୱପ୍ନ କପରି ଅବସ୍ଥାଚକ୍ରରେ ପ୍ରତାରିତ ହୋଇ ନଷ୍ଟ ହୋଇଛି, ତା'ର କରୁଣ ଚିତ୍ର ଲେଖକ ପ୍ରଦାନ କରିଛନ୍ତି ।

---

# ନଶୀଥର ପ୍ରେତାତ୍ମା

## ଅଧ୍ୟାପକ ଶ୍ରୀ ପ୍ରାଣବନ୍ଧୁ କର

•

ଶ୍ରୀ ପ୍ରାଣବନ୍ଧୁକରଙ୍କର ୧୯୧୪ ମସିହା ଡିସେମ୍ବର ମାସରେ କଟକଜିଲ୍ଲା ଡମପଡ଼ା ଗଡ଼ରେ ଜନ୍ମ । ସେ ୧୯୪୧ ମସିହାରୁ ଶିକ୍ଷାବିଭାଗର ବିଭିନ୍ନ କ୍ଷେତ୍ରରେ କାର୍ଯ୍ୟ କରି ଆସୁଅଛନ୍ତି ।

ଛାତ୍ର ଜୀବନରୁ ସେ କ୍ଷୁଦ୍ର ଗଳ୍ପ ଓ ଏକାଙ୍କିକା ଲେଖିବା ଦିଗରେ ବିଶେଷ ଆଗ୍ରହ ପ୍ରକାଶ କରିଛନ୍ତି । ପରବର୍ତ୍ତୀ ଜୀବନରେ ସେ ଅନେକଗୁଡ଼ିଏ ପୂର୍ଣ୍ଣାଙ୍ଗ ନାଟକ ଲେଖି ସୁନାମ ଅର୍ଜନ କରିଛନ୍ତି । କ୍ଷୁଦ୍ରଗଳ୍ପ ଓ ଏକାଙ୍କିକା ଲେଖକଭାବରେ ଅଧ୍ୟାପକ କର ସୁପରିଚିତ । ୧୯୫୮ ମସିହା ନିଖିଳ ଭାରତ ଏକାଙ୍କିକା ନାଟକ ପ୍ରତିଯୋଗିତାରେ ତାଙ୍କର 'ଶ୍ୱେତପଦ୍ମା' ନାଟିକା ପ୍ରଥମ ପୁରସ୍କାର ଲାଭ କରିଥିଲା ।

'ନଶୀଥର ପ୍ରେତାତ୍ମା' ଗଳ୍ପଟିର ନାୟକ ଚୁଡ଼ିଆ ବଡ଼ଚଣା ଗ୍ରାମର ଗୋଟିଏ ଅଥର୍ବ ପଙ୍ଗୁ ଗ୍ରାମବାସୀ ନୁହେଁ, ସେ ଏକ ପ୍ରତୀକ । ସେ ସମଗ୍ର ଭାରତ-ବର୍ଷର ଶହ ଶହ ନିର୍ଯ୍ୟାତିତ ଓ ପ୍ରତାରିତ ଆତ୍ମାର ପ୍ରତିନିଧି । ଇଲେକ୍‌ସନ ଟ୍ରକର ଆକସଲ୍‌କୁ ଜାବୁଡ଼ି ଧରି ସେ 'ଛତିଆବଟ' ଯାଏଁ ଘୁଷୁରି ଘୁଷୁରି ଯିବା ପାଇଁ ଯେଉଁ ଜିଦ୍ ଧରିଥିଲା ସେ ଜିଦ୍ ଗୋଟିଏ ବିକ୍ଷୁବ୍ଧ ଓ ପ୍ରତାରିତ ଆତ୍ମାର ବିଦ୍ରୋହର ରୂପାନ୍ତର । ଆର୍ଯ୍ୟ ସଂସ୍କୃତିର ଯେଉଁ କ୍ଷୀଣ ସ୍ରୋତ ବର୍ତ୍ତମାନ ବି ଏହି ଭାରତର ବାଲୁକାମୟ ବକ୍ଷରେ ପ୍ରବାହିତ,ସେହି ସଂସ୍କୃତିର ମାନଦଣ୍ଡରେ ବିଚାର କଲେ, ସନ୍ଦେହ ହୁଏ ଯେ, ଗୋଟାଏ ଅତି ମହାନ୍ ଜାତିର ଆମ୍ଭେମାନେ ଦାୟାଦ ।

———

